# ଦ୍ୱାହିତ ଉପଖ୍ୟାନ

ଡ. ଗୋବିନ୍ଦ ଚନ୍ଦ୍ର ଦାଶ



# ଆହତ ଉପତ୍ୟକା

ଡଃ ଗୋବିନ୍ଦ ଚନ୍ଦ୍ର ଦାଶ



ଜ୍ଞାନଯୁଗ ପବ୍ଲିକେଶନ
ଭୁବନେଶ୍ୱର

Email : contact@gyanajuga.com Website : www gyanajuga.com

# ଆହତ ଉପତ୍ୟକା

(କବିତା)

ଡଃ ଗୋବିନ୍ଦ ଚନ୍ଦ୍ର ଦାଶ
ପ୍ରାଧ୍ୟାପକ, ରସାୟନ ବିଜ୍ଞାନ ବିଭାଗ
ସାମନ୍ତ ଚନ୍ଦ୍ରଶେଖର ସ୍ୱୟଂଶାସିତ ମହାବିଦ୍ୟାଳୟ, ପୁରୀ

**ପ୍ରକାଶନ ଉପଦେଷ୍ଟା :**
ବିନୋଦ ବିହାରି ବିଶୋଇ
(M)୯୯୩୭୬୯୪୭୮୧

**ପ୍ରକାଶକ :**
ଜ୍ଞାନଯୁଗ ପବ୍ଲିକେଶନ୍
ଏନ୍-୬/୪୨୮, ଆଇ.ଆର୍.ସି.ଭିଲେଜ
ନୂଆପଲ୍ଲୀ, ଭୁବନେଶ୍ୱର-୧୫
ଫୋନ୍ ନଂ- ୨୫୫୨୦୯୧

**ପ୍ରଚ୍ଛଦ :** ଅସୀମ ବସୁ

**ମୁଦ୍ରଣ :**
କ୍ରିଏଟିଭ୍ ଅଫସେଟ୍
ଏନ୍-୬/୪୨୮, ଆଇ.ଆର୍.ସି.ଭିଲେଜ
ନୂଆପଲ୍ଲୀ, ଭୁବନେଶ୍ୱର-୧୫
ଫୋନ୍ ନଂ- ୨୫୫୨୦୯୧

**ପ୍ରଥମ ପ୍ରକାଶ :** ୨୦୧୨

**ମୂଲ୍ୟ :** ଟ. ୧୨୦/-

---

ଜ୍ଞାନଯୁଗ ପବ୍ଲିକେଶନ୍ ତରଫରୁ ସୁଷମା ବିଶୋଇ, ପ୍ଲଟ ନଂ.ଏନ୍-୬/୪୨୮, ଆଇ.ଆର୍.ସି.ଭିଲେଜ୍, ନୂଆପଲ୍ଲୀ, ଭୁବନେଶ୍ୱରଙ୍କ ଦ୍ୱାରା ମୁଦ୍ରିତ ଓ ପ୍ରକାଶିତ ।

## ଯାହାଙ୍କ ପାଇଁ ଏତେସବୁ—

ହାତଧରି ଚାଲି ଶିଖାଇଥିବା
ଅକ୍ଷର ସବୁକୁ ଚିହ୍ନାଇ ଦେଇଥିବା
ଶବ୍ଦ ସବୁକୁ ସଂଳାପ କରିବାର
ଦକ୍ଷତା ଆଣି ଦେଇଥିବା
ସେଇ ନନା, ବୋଉଙ୍କ ଉଦ୍ଦେଶ୍ୟରେ.....

—ଗୋବିନ୍ଦ

ମିତ୍ରଦୃଷ୍ଟି

# କବିତାର ସବୁଜ ଉପତ୍ୟକାରେ ଗୋବିନ୍ଦ

ଏକଦା ବି.ଜେ.ବି. କଲେଜରେ ଡଃ ଗୋବିନ୍ଦ ଚନ୍ଦ୍ର ଦାଶ ଥିଲେ ମୋ ସହକର୍ମୀ । ରସାୟନଶାସ୍ତ୍ରର ପ୍ରାଧ୍ୟାପକ । ମାତ୍ର ଏହି ବିଜ୍ଞାନୀ ବନ୍ଧୁଟିର ପ୍ରାଣରେ କବିତାର ଅନ୍ତଃସଲିଳା ଯେ ବହିଚାଲିଥିଲା, ତା'ର ସନ୍ଧାନ ମୁଁ ପାଇଲି ବହୁ ବିଳମ୍ବରେ, ବୃତ୍ତିଗତ ଜୀବନରୁ ଅବସର ନେବା ପରେ, ଯେଉଁଦିନ ସେ ମୋ ହାତକୁ ବଢ଼େଇ ଦେଲେ 'ସମୟର ସ୍ୱର'—ତାଙ୍କ କବି-ଜୀବନର ପ୍ରଥମ ସ୍ୱାକ୍ଷର । ବିସ୍ମିତ ଓ ପୁଲକିତ ହେଲି । ଏବେ ମୋର ସେହି ପୁଲକକୁ ବହୁଗୁଣିତ କରି ଗୋବିନ୍ଦ ମୋତେ ଦେଇଛନ୍ତି ପଢ଼ିବାକୁ ତାଙ୍କ ଦ୍ୱିତୀୟ କବିତା ବହିର ପାଣ୍ଡୁଲିପି— 'ଆହତ ଉପତ୍ୟକା' ।

ପାଣ୍ଡୁଲିପିର ଅନ୍ତଃପ୍ରବେଶ ପୂର୍ବରୁ ମନରେ ପ୍ରଶ୍ନ ଆସିଲା, ଆରମ୍ଭରୁ ନାମକରଣରେ କାହିଁକି ଏଭଳି 'ଆହତ' ଭାବନା ? କବିତା କ'ଣ କାହାକୁ ଆଘାତ ଦିଏ ? ବରଂ ଆହତ ଭାବନାରେ କବିତାର ସ୍ପର୍ଶ ସଂଚାର କରେ ଅନନୁଭୂତ ରସବୋଧ । ଜୀବନରେ ଯେତେ ଯାହା ଦୁଃଖ ଓ ଦହନ, ବ୍ୟଥା ଓ ବ୍ୟର୍ଥତା, ଅଭାବ ଓ ଅପୂର୍ଣ୍ଣତା, କବିତାର କୁହୁକ କଳାରେ ସେସବୁ ଅପୂର୍ବ ସୃଜନଶିଳ୍ପରେ ପରିଣତ ହୋଇଯାଏ । ପର୍ବତରେ ବି ପଦ୍ମ ଫୁଟେ । ଶୁଖିଯାଇଥିବା ନଦୀରେ ହଠାତ୍ ବନ୍ୟାର ପ୍ଲାବନ ଦେଖାଦିଏ । ଭୁଲିହୋଇଯାଏ ଜୀବନର ସକଳ ଅପ୍ରାପ୍ତି, ଅପୂର୍ଣ୍ଣତାଜନିତ ଦୁଃଖ ଓ ଶୋକର ଜ୍ୱାଳା । ତାହାହିଁ ଘଟିଛି ଗୋବିନ୍ଦଙ୍କ କବିତାରେ । ସେ ଲେଖିବା ପାଇଁ ନିଜକୁ ପ୍ରସ୍ତୁତ କରି କବିତା ଲେଖି ନାହାନ୍ତି । ଅଥଚ କବିତା ପରେ କବିତା ଲେଖିହୋଇ ଯାଇଛି । କହିବାକୁ ଗଲେ ସେ କବିତା ଲେଖି ନାହାନ୍ତି । କବିତା ହିଁ ତାଙ୍କୁ ଲେଖି ଚାଲିଛି । ତାଙ୍କୁ ମନେ ହେଉଥିବା 'ଆହତ ଉପତ୍ୟକା' ବାସ୍ତବରେ କବିତାର ଏକ ସବୁଜ ଉପତ୍ୟକାରେ ପରିଣତ ହୋଇଯାଇଛି । ଏବେ ସେଇ ସବୁଜ ଉପତ୍ୟକାର ଅଧୀଶ୍ୱର ହେଉଛନ୍ତି ପ୍ରିୟ

ଗୋବିନ୍ଦ । ପଛକୁ ଫେରି ଚାହୁଁଛନ୍ତି, କୁଆଡ଼େ ଗଲା ସେ ପିଲାଦିନ ! 'ଉଦୁଉଦିଆ ଖରାବେଳେ ଗାଁ ତୋଟାରେ ବୋହୂଚୋରି ଖେଳ', 'ରଣିଫୁଲିଆ ଜହ୍ନରାତି'ରେ ସ୍ୱପ୍ନର ଅଭିସାର । ଗାଁଦାଣ୍ଡ, ନଈତୁଠ, ଫୁଲତୋଳା, କଙ୍କିଧରା, ବୋଉର ଛାଟ ଓ ବର୍ଦ୍ଧୁ ମାଷ୍ଟ୍ରଙ୍କ ପାଖରେ ପଣିକିଆ ଘୋଷିବାର କଷ୍ଟ—କେତେ ସ୍ମୃତି, କେତେ ସମ୍ପର୍କର ଗଣ୍ଠି । ସବୁ ଫିଟି ଫିଟି ଯାଉଛି ଏବେ କବିତାରେ । କବିତା ହିଁ ବଞ୍ଚିବାର ରାହା ଦେଖଉଛି ଜଂଜାଳଭରା ଏ ସଂସାରରେ । ରାତିରେ ଦେଖୁଥିବା ସ୍ୱପ୍ନସବୁ ହୁଏତ ସକାଳକୁ ମିଛ ହୋଇଯାଆନ୍ତି । ତଥାପି ସ୍ୱପ୍ନ ଦେଖା ସରେ ନାହିଁ । କାରଣ ଏ ସ୍ୱପ୍ନ ହେଉଛି କବିତାର । ଗୋବିନ୍ଦଙ୍କୁ କବିତାରେ ଭେଟିଲା ପରେ ମନେ ହେଉଛି, ପ୍ରତ୍ୟେକ ବ୍ୟକ୍ତି ଭିତରେ ହୁଏତ କବିତାଟିଏ ଲୁଚିଥାଏ । କାହା ପାଖରେ ସେହି କବିତାର ପ୍ରକାଶ ପାଇଁ ସାମର୍ଥ୍ୟ ଥାଇପାରେ, ଆଉ କେହି ସେଥିପାଇଁ ସମର୍ଥ ନ ହୋଇ ପାରନ୍ତି । ସୌଭାଗ୍ୟବନ୍ତ କିନ୍ତୁ ଗୋବିନ୍ଦ, ଯିଏ ନିଜ ଭିତରର କବି-ଆତ୍ମାଟିକୁ ଆବିଷ୍କାର କରି ତାକୁ ହାତଧରି ବାଟ କଢ଼େଇ ନେଇଆସିଛନ୍ତି, ଦୁନିଆ ଦାଣ୍ଡରେ ଠିଆ କରେଇ ଦେଇ କହିପାରିଛନ୍ତି—ଦେଖ, ଭଲକରି ଦେଖ—ତୁମ ସାମ୍ନାର ପୃଥିବୀକୁ । କେତେ ଚିତ୍ର, କେତେ ଚରିତ୍ର । ସେମାନଙ୍କର ଆଶା-ଆଶଙ୍କା, ସ୍ୱପ୍ନ ଓ ସମ୍ଭାବନାକୁ ନେଇ ଜୀବନ । ତେଣୁ ଜୀଇଁବାକୁ ହେବ । କିଛି ନ ହେଲେ ଅନ୍ତତଃ କବିତାରେ ।

ଗୋବିନ୍ଦଙ୍କ କାବ୍ୟଚେତନାରେ କେବଳ ନିଜ ଜୀବନର କିମ୍ବା ବ୍ୟକ୍ତିଗତ ଭାବ-ଅଭାବର ପ୍ରତିଫଳନ ଘଟିନାହିଁ, ସାମାଜିକ ବ୍ୟବସ୍ଥା ଓ ଅବସ୍ଥା ମଧ୍ୟ ପ୍ରତିବିମ୍ବିତ ହୋଇଛି । ସମାଜର ସ୍ୱର ଓ ସନ୍ଦେଶ ତାଙ୍କ କବିତାର ସ୍ୱର ହୋଇଯାଇଛି । ନିଜ ଇଲାକାରୁ ଯାଇ କୋଳାହଳର ନଗରୀ କଲିକତାରେ ଠିକଣା ଖୋଜୁଥିବା କବି ପୁଣି ଦେଶପାଇଁ ଜୀବନ ଦେଇଥିବା ସହିଦର ଶବାଧାର ପାଖରେ ପହଞ୍ଚିଯାଇଛନ୍ତି । ସହିଦର ସଦ୍ୟ ବିଧବା ପତ୍ନୀର କୋହ ଓ କାରୁଣ୍ୟ ସଂଚରିଯାଇଛି କୋମଳ କବି ପ୍ରାଣରେ । 'ଚଲାପଥ'ର ମଣିଷ ଏବଂ ଦୃଶ୍ୟକୁ ଶବ୍ଦରେ ସାଉଁଟି ନେବାରେ ଗୋବିନ୍ଦଙ୍କ ଆନନ୍ଦ ହିଁ ବାରିହୋଇ ପଡୁଛି । ନିଜ ଚାରିପାଖର ପରିବେଶକୁ ଆତ୍ମିକ ଦୃଷ୍ଟିରେ ନିରେଖି ଦେଖୁ ଦେଖୁ ନିଜ ଛାଇକୁ ଦେଖି ପୁଣି ଡରିଯାଉଛନ୍ତି କବି—

ଖୁସିରେ ମଣିଷ କିଛିଦିନ
କାଟିବ ବୋଲି ଭାବିଲା ବେଳକୁ
କେଉଁଠି ଥିଲା କେଜାଣି ଛାଇଟିଏ
ଠିଆହେଲା ଆସି
ମୋ ପଢ଼ାଘର ଆଲୁଅ ପାଖରେ ।

ମୁଁ କିଛି ପଚାରିବା ପୂର୍ବରୁ
ମୋ ବିଷୟରେ ସବୁକିଛି
କହିଗଲା ଏକା ନିଶ୍ୱାସରେ ।।

ଡରିଗଲି ତାକୁ ଦେଖି
ମୋ ଭିତରଟାକୁ ଏତେ ଭଲ କରି
କେମିତି ଜାଣିଲା, ମୋର କିଛି
ଘଟିବା ଆଗରୁ ସତେ ଯେମିତି
ମୋତେ ସତର୍କ କରାଇ ଦେଲା । (କବିତା : 'ଛାଇ')

ଖାଲି ଆପଣାର ଛାଇ ନୁହେଁ, ଆତ୍ମୀୟତାର ଚରିତ୍ରମାନେ ମଧ୍ୟ କବିତାର କାୟା ଧାରଣ କରି ଆସିଛନ୍ତି ଗୋବିନ୍ଦଙ୍କ ପାଖକୁ । ବୋଉ, ଝିଅ ରୂପା, ପ୍ରିୟତମାମାନଙ୍କ ପାଇଁ ଲେଖାହୋଇଛି ଗୋବିନ୍ଦଙ୍କ କବିତା । ଦୁଃଖ-ସୁଖକୁ ସାଉଁଟି ନେବାରେ ରୂପାୟିତ ଗୋବିନ୍ଦଙ୍କ କବିତା । 'ଭସାମେଘ' ଭଳି ଭାବନାରେ ଭାସି ବୁଲୁଥିବା ଏବଂ ମଝିରେ ମଝିରେ ବର୍ଷି ଯାଉଥିବା ଗୋବିନ୍ଦଙ୍କ କବିତା । ଅଦୃଶ୍ୟରେ ଦୃଶ୍ୟମାନ, ପୁଣି ଦୃଶ୍ୟରୁ 'ଦୃଶ୍ୟାନ୍ତର'ରେ ବିବର୍ତ୍ତନ ଗୋବିନ୍ଦଙ୍କ କବିତା ।

ଏମିତି କବିର ଜୀବନ ନେଇ ସେ ବଞ୍ଚିଥାନ୍ତୁ ।
ରାତିର ଅନ୍ଧାରରେ, ଦିନର ଆଲୁଅରେ,
ଦେହର ତାତିରେ, ହୃଦୟର ପ୍ରୀତିରେ
ଗୋବିନ୍ଦ ହୋଇଯାଆନ୍ତୁ ସୁଦୀର୍ଘ କବିତା ।

# ଅନ୍ତଃସ୍ୱର

କବିତାକୁ ମୁଁ ଭଲପାଏ । ପ୍ରାଣଠାରୁ ଅଧିକ ନହେଲେ ବି ପ୍ରାଣଭରି । ଏ କଥା କହିବାର ତାତ୍ପର୍ଯ୍ୟ ହେଲା କବିତା ଭିତରେ ମୁଁ ଦେଖେ ମୋତେ ଓ ମୋ ଘରିକଡ଼ର ଅସହାୟତାକୁ । ମୋ ଭିତରେ ଗଢ଼ି ଆସୁଥିବା ମନପସନ୍ଦର ମୂର୍ତ୍ତିଟିକୁ ଜୀବଦାନ ଦିଏ, ମୋ ଭିତରେ ଆଂକି ହେଉଥିବା ଛବିଟିକୁ ଜୀବନ୍ତ କରିଦିଏ, ମୋ ହାତରେ ଉପରୁ ଖସିପଡୁଥିବା ଟୋପାଏ କାକରକୁ ମୁକ୍ତା କରିଦିଏ, ମୁଁ ଗୋଟାଉଥିବା ଶବ୍ଦମାନଙ୍କ ଭିତରେ କବିତାକୁ ବାଂଧି ରଖେ । ମନରେ ପ୍ରଶ୍ନ ଉଠେ ଯେଉଁଟା କବିତାରେ ସମ୍ଭବ ସେଇଟା ଗଳ୍ପରେ ସମ୍ଭବ ନୁହେଁ କି ? ଉତ୍ତର ତ ନିଶ୍ଚିତ ଭାବରେ 'ହଁ' କିଂତୁ କବିତା ଓ କବି ମଧ୍ୟରେ ସଂପର୍କ, ଗଳ୍ପ ଓ ଗାଳ୍ପିକ ମଧ୍ୟରେ ସଂପର୍କ ଠାରୁ ଟିକେ ଭିନ୍ନ । କବିତାକୁ ନେଇ କବି ଗର୍ବକରେ, ଆତ୍ମ ସମୀକ୍ଷାକରେ, ସ୍ୱପ୍ନ ଦେଖେ, ବିଭୋର ହୁଏ, ଉତ୍ସାହିତ ହୁଏ, ସୃଷ୍ଟିର ରହସ୍ୟ ଭେଦକରେ, ଘଟଣା, ଦୁର୍ଘଟଣାମାନଙ୍କୁ ଭେଟେ, ଭେଟିଦିଏ, କଳ୍ପନା ଓ ଚେତନା ଶକ୍ତିର ଅଭିବୃଦ୍ଧି ଘଟାଏ । ମୋଟ ଉପରେ ପରିତୃପ୍ତିର ପାହାଚ ଉପରେ ପରିକଳ୍ପନାର ସୌଧ ଗଢ଼ିଦିଏ । ଗଳ୍ପରେ ଥାଏ କିଛି ଗୋଟାଏ ଘଟଣା, ବାସ୍ତବତାର ଦୁନିଆ ପ୍ରସରିଯାଏ ଗାଳ୍ପିକଠାରୁ ପାଠକ ପାଖକୁ – ନୈତିକ ପରିବର୍ତ୍ତନର ପୃଷ୍ଠଭୂମି ତିଆରି ହୋଇଯାଏ ବେଳେବେଳେ ତ ପୁଣି କେତେବେଳେ ଭିତରକୁ ଧସେଇ ପଶିଆସେ ଭିତରେ ଦାନାବାଂଧୁଥିବା ଗର୍ବ, ଅହଂକାର, ଅନୈତିକ କାର୍ଯ୍ୟକଳାପର ଅନ୍ତଃସ୍ୱର । ମଣିଷ ମହାତ୍ମା ହୋଇଯାଏ ନଚେତ୍ ରାକ୍ଷସ ପାଲଟିଯାଏ । କବିତାରେ ଲୁଚି ରହିଥାଏ ପାଟିରେ ଉଚ୍ଚାରିତ ହୋଇପାରୁ ନଥିବା ଶବ୍ଦ, ଆଖିରେ ଦେଖିପାରୁନଥିବା ଦୃଶ୍ୟ, କାନରେ ଶୁଣି ପାରୁନଥିବା ଭାଷା ତଥା ବେସାହାରା ହୋଇ ବୁଲୁଥିବା କୂଳକିନାରା ନଥିବା କିଛି ଅପାଂକ୍ତେୟ ଶବ୍ଦ ସମୂହର ପ୍ରତିଧ୍ୱନି । ଜୀବନ ଯନ୍ତ୍ରଣାରୁ ମୁକ୍ତହୋଇ କିଛି ପ୍ରଗଲ୍‌ଭ ପ୍ରୟାସଗୁଡ଼ିକର ନିୟନ୍ତ୍ରଣ କବିତାର ଆଭିମୁଖ୍ୟ ହୋଇଥାଏ ।

ବେଳବୁଡ଼ିଗଲେ ସୂର୍ଯ୍ୟ ଯେମିତି ଅଲୋଡ଼ା ହୋଇଯା'ନ୍ତି ଶବ୍ଦ ସରିଗଲେ ଭାବନାରେ ପୂର୍ଣ୍ଣଛେଦ ପଡ଼େ ଓ କବିତା ଲୁଚିଯାଏ କବି ଭିତରେ । ପୁଣି କିଛି ନୂଆ ଶବ୍ଦ ଜନ୍ମନିଏ, ଭାବନାର ପାଖୁଡ଼ା ମେଲିଯାଏ, କବିତା ଜୀବନ୍ତ ହୋଇଉଠେ

ଓ କବି ତା'ଭିତରେ ବାରଂବାର ନିଜର ପ୍ରତିଭାକୁ ଉଜ୍ଜୀବିତ କରିଥାଏ । ଗଭୀର ଆତ୍ମବିଶ୍ୱାସର ପର୍ଦ୍ଦା ଭିତରେ କବିତା ଜନ୍ମନିଏ, ଚେତନା ଶକ୍ତିର ଅଭ୍ୟୁଦୟ ହୁଏ । ଭାବନାର ପରିପ୍ରକାଶ ଘଟେ ଓ କବିତା ଜୀବନ ପାଲଟିଯାଏ ।

ଯେଉଁ ଜୀବନ ନେଇ କବି ଜିଏଁ, ଯାହାକୁ ନେଇ ଘର ସଂସାର କରେ, ଯିଏ ତା'ର ସୁଖ ଦୁଃଖର ସାଥି ହୋଇ ମମତାର ସନ୍ଧାନ ଦିଏ, ସୃଷ୍ଟି ଆଉ ସ୍ରଷ୍ଟା ଭିତରେ ସମ୍ପର୍କ ଅତୁଟ ରଖାଏ, ଭକ୍ତି ଓ ଭାବର ଅପୂର୍ବ ସମନ୍ୱୟ ଘଟାଏ, ଚେତନା ଓ ଭାବନା ଭିତରେ ସମ୍ବନ୍ଧ ସ୍ଥାପନ କରେ, ଘଟଣା ଓ ଦୁର୍ଘଟଣାମାନଙ୍କୁ ନେଇ ନିଜକୁ ଗଢ଼େ ସେ ହିଁ କବିତା । ସେଥିରେ ଥାଏ ଆନ୍ତରିକତା, ଅନ୍ତରଂଗତା, ପରିକଳ୍ପନା, ବଞ୍ଚିବାର କଳା କୌଶଳ ଓ ପରିଶେଷରେ ପରିପୂର୍ଣ୍ଣତା ।

ମୁଁ ଜଣେ ଜବରଦସ୍ତ କବି ନୁହେଁ । କବିତା ଲେଖିବାକୁ କାଗଜକଲମ ଧରି ବସେ ନାହିଁ । ପ୍ରତି ମୁହୂର୍ତ୍ତରେ କିଛି ଗୋଟାଏ ମୋ ଭିତରେ ଅନୁରଣିତ ହେଉଥାଏ ଏବଂ ସମୟ ସୁବିଧା ଦେଖି ମୋ ଭିତରେ ବିସ୍ଫୋରଣ ଘଟାଏ ଏବଂ ତା' ଭିତରୁ ଜନ୍ମନିଏ କବିତାଟିଏ । ମୋ ଭିତରଟାକୁ ପରଖିନିଏ, ମୋ ଭିତରର ଅଳିଆ, ଆବର୍ଜନାକୁ ସଫା କରିଦିଏ, ମୋ ସ୍ୱପ୍ନର ସଂସାରକୁ ଗଢ଼ିଦିଏ, ସ୍ମୃତି ଓ ବିସ୍ମୃତିକୁ ଯୋଡ଼ିଦିଏ, ମୋ ଭିତରେ ମୁଣ୍ଡଟେକୁଥିବା ସମସ୍ୟାଗୁଡ଼ିକୁ ବାସ୍ତବତାର ରୂପଦେଇ ସମାଧାନର ସୂତ୍ର ବତାଇଦିଏ ।

କବିତାକୁ ନେଇ ମୁଁ ବଞ୍ଚିବାର ରାହା ପାଏ । ମୁହଁ ସଂଜରେ ତାକୁ ଭେଟେ ଅନୁଢ଼ା ଯୁବତୀ ରୂପରେ, ପାହି ଆସୁଥିବା ରାତିରେ ଛାୟା ଭାବରେ ଓ ପରିଷ୍କାର ସକାଳେ ସଦ୍‌ଗୁରୁମାନଙ୍କ ମୁଖନିଃସୃତ ଓଁକାରଧ୍ୱନିରେ । ସେ ଯାହାହେଉ କବିତା ମୋ ଜୀବନ ଓ ଜୀବନ ମୋର କବିତା ।

***

# କବିତାକ୍ରମ

# ବଳକା ଆୟୁଷକୁ ଧରି

ରାତି ବଢୁଛି ଅନ୍ଧାରରେ
ତାତି ବଢୁଛି ଦେହରେ ।

ଲୁଚି ଯିବାକୁ ଇଛା ହେଉଛି
ଦୁର୍ଯୋଗକୁ, ଘଟିବାକୁ ଅପେକ୍ଷା
କରିଥିବା ଘଟଣା ମାନଙ୍କୁ ।
ପଶାକାଠିରେ ପଣ ରଖିଥିବା
ଲାଲ୍ ପଣତକୁ, ନଜରବଂଦୀ ଥିବା
ଆହତ ଆବେଗମାନଙ୍କୁ ।।

ଯାହାକୁ ନେଇ ଘର କରିବାକୁ
ଇଛା ହେଉଛି ସେ ମୋ
ପାଖ ମାଡୁନାହିଁ
ଯାହାପାଇଁ ଲେଖିବସୁଛି
ସୁଦୀର୍ଘ କବିତାଟିଏ,
ସିଏ ବାଟ ଓଗାଳି ଠିଆ ହେଉଛି
ମୋ ସ୍ମୃତିର ସାମ୍ନାରେ
ଜୀବନଚର୍ଯ୍ୟାର ପ୍ରତିଟି ପାହାଚରେ
ଦିଶୁଛି ନୈରାଶ୍ୟର ନିଖୁଣ ପ୍ରତିଛବିଟିଏ ।।

ସୁଯୋଗ ଆସେନାହିଁ
ବାରଂବାର ସପ୍ତାହର ରବିବାର ପରି
ପ୍ରେମିକ ହୁଏନି ପାଗଳ ସବୁବେଳେ
ସମୟ ତା' ଜାଗ୍ରତ ପ୍ରହରୀ
ସମ୍ଭାବନାକୁ ସାଥୀକରି ବଞ୍ଚିବାକୁ ନିର୍ବୋଧତା ନ କହି
ଅନ୍ୟକିଛି କହି ହୁଏ ନାହିଁ ।
ସମୟ ସାଥିରେ ତାଳ ଦେଇ
ଅଣନିଶ୍ୱାସୀ ହୋଇ ଦୌଡ଼ିବାକୁ
ବିଶ୍ୱାସ କୁହାଯାଏ ନାହିଁ ।।

ସାର୍ଥକତାର ସାରାଂଶ ଆଜି ନିଷ୍ପ୍ରଭ ଦିଶୁଚି
ପ୍ରତିଶ୍ରୁତିର-ପରିଭାଷା ଭୁଲିଯାଇ ।
ମିଥ୍ୟା ଅନୁରକ୍ତିର ଆଶ୍ୱାସନାଟିଏ
ନିରବି ଯାଇଛି
ନିରୋଳା ଅପରାହ୍ନଟିରେ ନିଜକୁ ଲୁଚାଇ ।।

ରାତି ପାହି ଆସୁଚି
ଭସାମେଘପରି ଆକାଶରେ
ତାତି ଖସି ଆସୁଛି ଦେହରୁ
ବଳକା ଆୟୁଷକୁ ଧରି ।। ❑❑

# ଅପେକ୍ଷା

ରକ୍ତର ଫଟା ମାଟିକାନ୍ଥଟିରେ
ନେସି ହୋଇ ଯାଇଛି ତୁହାକୁତୁହା
ପଶ୍ନବାଚୀ, ନିରୁକ୍ତ ବେଳାରେ
ହଜିଯାଇଛି ପ୍ରେମ ତଉଲିବାର ତରାଜୁଟି
ରିକ୍ତ ହସ୍ତରେ ଫେରିଯାଉଛି
ବାଟବଣା ବାଟୋଇଟି ପରି
ନିରୀହ କ୍ଲାନ୍ତ ଅନୁଭବଟିଏ ।

ବେଶୀ ନହେଲେ ନାହିଁ
ମୋତେ ତ ଦେଇପାରିଥା'ନ୍ତା
ସଞ୍ଚିତ ଯୌବନରୁ ଚିରୁଡାଏ
ସମର୍ପି ନ ଦେଲେ ନାହିଁ
ଆହା କରିପାରିଥା'ନ୍ତା ତ
ମୋ ଭିତରେ ଆତଯାତ
ଆବେଗର ବୈରାଗ୍ୟକୁ ।

ବାଟରେ ପଡ଼ିନି ସୂର୍ଯ୍ୟ ଯେ
ମୁଁ ଗୋଟେଇ ନେବି

ସାଂଗରେ ଯାଉନି ସଂଜ ଯେ
ମୁଁ ବିଶ୍ରାମ କରିବି
ଏ ତ ଛାଇ ଆଲୁଅର ଖେଳ
ଗୋଟେପଟେ ହନ୍ତସନ୍ତ ଫଗୁଣ
ଆର ପଟେ ଅଶାନ୍ତ ଶ୍ରାବଣ
କାହାକୁ ଆଶ୍ରାକରି ଜିଇଁବି
ଇଏ କି ବା ଜୀବନ !
ଏଥିରେ ପୁଣି ଏତେ ଆୟୋଜନ ।

ଓଠ ଦି'ଟା ଶୁଖିଛନ୍ତି
କଥା କହିବେ କ'ଣ
ନିରବି ଯାଇଛନ୍ତି ଅଭିମାନରେ
ମୁହଁ ଲୁଚେଇ କ୍ୟାମେରା ଆଗକୁ
ଆସୁଥିବା ଅପରାଧିଟି ଭଳି
ଠିଆ ହୋଇଛି ସନ୍ତର୍ପଣରେ
ମୋ ଆଖିସାମ୍ନାରେ ମୋ ପ୍ରତିଛବି
ସତର୍କ କରିଦେବାକୁ ମୋତେ
କାଳେ ମୋର ଗୋଡ ଖସିଯିବ
ପୁଣିଥରେ ଇତିହାସର
ଶିଉଳି ଲଗା ସିଡିରେ ।।

ସମୟକୁ ସାଥୀକରି
ମୁଁ ବଞ୍ଚିବା ଶିଖିଛି ।
କାଳ କାଳ ଅପେକ୍ଷା କରି
ମୁଁ ମୃତ୍ୟୁକୁ ରଖିଛି ।। ❑❑

# ପିଲାଦିନ

କେଜାଣି କାହିଁକି ମନକୁ ଏବେ
ଆସୁଛି ବାରଂବାର ପିଲାଦିନ
ମା'କୋଳ, ନଈକୂଳ ଓ ଶାଳବଣ
କାକର ଭିଜା ରାତିର ଦିଗହଜା ଅପେରା
ଓଦା ମାଟିର ବାସ୍ନା ସହିତ
ତାଳମିଳାଇ ଚାଲୁଥିବା ଗୋରୁପଲ ।
ଝରକା ଫାଙ୍କରେ କିଏ ଗଲାବେଳେ
ଉହୁଙ୍କି ଚାହୁଁଥିବା ଆଖି ପାଉଥିବା
ପର୍ଯ୍ୟନ୍ତ ମୋର ସେହି ପିଲାବେଳ ।।

ରଣିଫୁଲିଆ ଜହ୍ନ ରାତି ଖସିପଡିଛି
ସତେ ଯେମିତି ବୋଉର
ଶୁଆପଖିଆ କାନିରେ
ଖୁସିରେ ଲୋଟି ଯାଇଛି
କଣ୍ଟାବାଡରେ ମାଡିଥିବା ନାଉଡଙ୍କ
ଉଦୁଉଦିଆ ଖରାବେଳେ ଗାଁ ତୋଟାରେ
ବୋହୂଚୋରୀ ଖେଳ

ଗଛପାଚିଲା ଆମ୍ବକୁ ଫୋପଡ଼ ଫିଙ୍ଗା
ଗଦା କକେଇଙ୍କ ସାଙ୍ଗେ ତାସ୍‌ଖେଳ
ସାଇଫନ୍ ମୁହଁ କେନାଲ କୂଳ
ବନିଶି ପକା ବେଳ, ରମ୍ଭା ବୋଉର
ତଣ୍ଟିଫଟା ଡାକ ଏପର୍ଯ୍ୟନ୍ତ ଶୁଣାଯାଉଛି
ସଂଜବେଳେ ନଈପଠାରେ ଗୁମୁରି ଗୁମୁରି
କାନ୍ଦୁଛି ମୋ ପିଲାବେଳ
ବର୍ଷାପାଣିରେ ଭିଜିଭିଜି
ଶେତା ପଡ଼ିଯାଇଥିବା ପିଲାବେଳ ମୋର
ଥରୁଚି, ମନେ ପକାଇ ଦେଉଛି
ବୋଉର ସେ ମାହାଳ ଛାଟର
ନୋଳାଫଟା ମାଡ
ପାଣି ସୁଅରେ ଭାସିଆସୁଥିବା
ରଂଗ ବେରଂଗ କାଗଜ ଡଂଗା ଗୁଡ଼ିକୁ ଧରି
ନାଁ ଲେଖି ଭସାଇ ଦେବାର ଦୃଶ୍ୟ
ଗୋଟିଗୋଟି କରି ସବୁମନେ ପଡୁଛି
ଗାଁ ଦାଣ୍ଡ, ନଈତୁଠ, ଫୁଲତୋଳା, ସଂଜବେଳା
ଭିତରେ ହସୁଛି ମୋ ପିଲା ବେଳ ।
ଭୟରେ ଭାଜିପଡୁଛି ତା'ଭିତରେ
କୁହୁଡି ଘେରା ସୁନ୍ଦର ସକାଳ ॥

ଧାନ ଉଷୁଆଁ ହାଣ୍ଡିପରି ମୁହଁଟାକୁ
କରି ରୁଷିଚି, ସାରୁପତ୍ର
ଦୁଇଟା ଭିତରେ କଙ୍କିଧରାଳି ମୋ ପିଲାବେଳ
ଦାନ୍ତ ଦେଖେଇ ଖତେଇ ହେଉଛନ୍ତି

ଡାଗରପୁଆ, କିତିକିତି, ଲୁଚକାଳି ଓ ଗୁଲି ଖେଳ
ବର୍ଣ୍ଣୁମାଷ୍ଟ୍ରଙ୍କ କୋଳରେ ବସି
ପଣିକିଆ ଘୋଷିବାର କଷ୍ଟ
ହଜି ଯାଇଥିବା ପିଲାଦିନ
ଆଗରେ କିଛି ନୁହେଁ ।
ଏବେ ଜାଣୁଛି ସେ ଫ୍ରକ୍ ପିନ୍ଧା
ଧାନସାଉଁଟା ଝିଅଟିର
ଗାଳି ମନେରଖିବାକୁ
ଯେତେ ଚେଷ୍ଟାକଲେ ବି
କାହିଁକି କେଜାଣି ଭୁଲିଯାଏ ।। ❑❑

# ଆହତ ଉପତ୍ୟକା

ଏକ ପରିବର୍ତ୍ତିତ ପରିସ୍ଥିତିର ପରିଣାମକୁ
ସାମ୍ନା କରିବାର ସତ୍‌ସାହସ ସମ୍ଭାବନାର
ସିଂହାସନକୁ ଜାଣିଶୁଣି ଅକ୍ତିଆର କଲା ।
ଶବ୍ଦର ସମୁଦ୍ରରେ ସୁନାର ପାଲଟା ଢେଉ
ଅଥଳ ଜଳରେ ନିମିଷକେ ରୂପା ପାଲଟିଲା ।।
ହାତରେ ଧରିଥିବା ବହଳେ ସୂର୍ଯ୍ୟର ଖରା
ଉତ୍ତାପର ଆଇନାରେ ଅନୁତପ୍ତ ହେଲା ।
ଭାଂଗି ପଡ଼ିଥିବା ସାନିଧର ଉତ୍ତପ୍ତ ବୈଶାଖ
ଜଳଜଳ ଯୌବନକୁ ଜାଳି ପୋଡ଼ିଦେଲା ।।

ଆଖିରେ ଅଳସ ଭାଂଗୁଥିଲା
ଅସମୟର ଅଲୋଡ଼ା ସୂର୍ଯ୍ୟାସ୍ତ
ଧୀର ଗମ୍ଭୀର ଚଲିରେ ବାରିହୋଇ ପଡୁଥିଲା
ପର୍ଯ୍ୟାପ୍ତ ନିଃସଂଗତା ।
ବାଟଭୁଲି ଯାଇଥିବା ସମୟର ନିଃସ୍ୱ ନିଃସ୍ୱ ଭାବ
ଓ କେବେକେବେ ଆତ୍ମହତ୍ୟାର
ଦ୍ୱାହିଦେଉଥିବା ଏକ ଅସ୍ୱାଭାବିକ ଆତ୍ମୀୟତା ।।

ପ୍ରେମରେ ପ୍ରମତ୍ତ ଆହତ ଉପତ୍ୟକାଟିଏ
ନୀଳନୀଳ ଆଖି ଇସାରାରେ କୁହୁକର
ଜାଲ ବିଛାଇଲା ।
ନିରବିଯାଇଥିବା କ୍ଳାନ୍ତ ଅପରାହ୍ନଟିକୁ
ପ୍ରେମିକର ଠିକଣା ପଚାରିବୁଝିଲା ।।

ପ୍ରେମର ପ୍ରାଚୁର୍ଯ୍ୟ ଭିତରେ
ପରିଣାମର ସୁଦୀର୍ଘ ସଡ଼କ
ଲଂବିଯାଇଥିଲା ପ୍ରଣୟର ଦୂର ଦିଗ୍‌ବଳୟଯାଏ ।
ପୋଷ ପୋଷ ପରାମର୍ଶର ଚଉଡ଼ା ଛାତିରେ
ଆଙ୍କି ଦେଇଥିଲା କିଏ ତର୍କବିତର୍କର
ନଗ୍ନ ମାନଚିତ୍ରଟିଏ ।।

ସିଏ ବଂଚିଥିଲା ପ୍ରେମକୁ ପାଥେୟକରି
ପ୍ରତ୍ୟୟକୁ ପରଖିବା ପାଇଁ ।
ସିଏ ଲୁଚିଥିଲା ଲାଜର ଓଢ଼ଣାତଳେ
ଅପରାଧୀଟିଏ ଭଳି ନିଜମୁହଁକୁ ଲୁଚାଇ ।। ❑❑

# ଆଶଙ୍କା

ମୁଁ ମୋତେ ଭଲକରି ଜାଣିବା ଦିନଠୁ
ଏପର୍ଯ୍ୟନ୍ତ ଯେତେ ସବୁ ସ୍ମୃତିର ଶାମୁକା
ଗୋଟେଇଛି, କେଉଁ ଗୋଟିକରେ ବି
ପାଇନାହିଁ ମୁକ୍ତା ।
ମୁଁ କରିଥିବା ଯେତେ ଧର୍ମ ଓ ଅଧର୍ମକୁ
ପାପ ପୁଣ୍ୟର ତରାଜୁରେ ତଉଲିଛି
କେଉଁ ଗୋଟିକରେ ବି ଦେଖିନାହିଁ
ଈଶ୍ୱରଙ୍କ ସତ୍ତା ।।

ଭକ୍ତି ଓ ଭାବରେ ଯେତେ
ବାନ୍ଧିବାକୁ ଚେଷ୍ଟାକରିଛି
ମନକୁ, ସେତେ ଘୁଞ୍ଚିଯାଉଛି ସିଏ
ମୋ ଠାରୁ ଅନେକ ଦୂରକୁ ।
ନିଜଠାରୁ ଦୂରେଇ ଯାଇଥିବା
ନିଜ ଲୋକମାନଙ୍କୁ ନିଜର କରିବାକୁ
ଯେତେ ଚେଷ୍ଟା କରିଛି
କାହିଁକି କେଜାଣି ସେମାନେ
ଭୁଲିଯାଇଛନ୍ତି ମୋ ଭଲ ପାଇବାକୁ ।।

କେଇପଦ କଥାରେ ମରିଗଲା ମନମୋର
ହୃଦୟରୁ ହଜିଗଲା ଭଲପାଇବାର ଭାଷା
ବଜ୍ରଠାରୁ କଠିନ ସେ ଅଦ୍ଭୁତ ମାନସିକତାରେ
ହାରିଗଲା ଉକୁଟି ଉଠୁଥିବା ଅସୁମାରୀ ଆଶା
କାଲି ଘଟିଯାଇଥିବା ଅଘଟଣ ସବୁ
ସ୍ୱପ୍ନ ହୋଇ ରହିଗଲେ ସବୁଦିନପାଇଁ ।
ଅପହଞ୍ଚ ଦୂରତାରେ ମନର ଉଦ୍‌ବେଗ ଟିକକ
ରହିରହି କାନ୍ଦୁଥିଲା ତୁହାଇ ତୁହାଇ ।।
ପିଲାଦିନଠୁ ଏପର୍ଯ୍ୟନ୍ତ
ଛୋଟବଡ କେତେ ଯେ ଘଟଣା
ଲୁଚି ଲୁଚି ଦେଖୁଛନ୍ତି ମୋ ଅପାରଗତାକୁ ।
ଭଲପାଇବାଠାରୁ ଭୁଲିଯିବା ପର୍ଯ୍ୟନ୍ତ
ଯାହାସବୁ ଉଠି ଆସୁଛି ମୋ ଆଖିସାମନାକୁ ।।

ମୋ ପାରୁପର୍ଯ୍ୟନ୍ତ ଲାଗି ମୁଁ ତାକୁ
ଯେତେ ବୁଝେଇଛି ସବୁ
ବୃଥାହୋଇ ଯାଇଛି
ତା ସଂକଳ୍ପ ପାଖରେ ।
ନିତି ନୂଆନୂଆ ସମସ୍ୟାର
ସାମ୍ନା କରିଅଛି
ଡରିଡରି ମରିଅଛି
ବଂଚିବାର ଆଶଙ୍କା ଭିତରେ ।।

ଆଖିରୁ ସାଉଁଟି ନେଲେ ଦୃଷ୍ଟି
ପଥହରା ହେବି ।
ମନରୁ ଲିଭାଇ ଦେଲେ ସୃଷ୍ଟି
ମୁଁ ଆଉ କାହାକୁ ଖୋଜିବି ।। ❑❑

# ବଦଳି

ବଦଳି ଏକ ଋତୁ
ଚାକିରୀ ଜୀବନରେ ସ୍ୱଅର୍ଜିତ
ସଞ୍ଚିତ ଶକ୍ତିର ପରୀକ୍ଷା ।
ଭୋକିଲା ବାଘଟିଏ ଝାମ୍ପଦେଇ
ଝୁଣୁଥିବା ପ୍ରଗତିର
ନିଛକ ନୀଳ ଉପତ୍ୟକା ॥

ଏଇ ଋତୁରେ ଦେହଥରେ
ମନ ଉଚାଟ ହୋଇ ଖୋଜେ
ଏକ ନିଭୃତ ଇଲାକା
ଯେଉଁଠି ସୁଖ୍ ଶାନ୍ତିର
ଛୋଟ ବଗିଚାଟେ ଥାଏ ।
ଆଉ ତା ଭିତରେ ଭୟର ଗଛରେ
ନିର୍ଭୟରେ ନାନାଜାତି ଫୁଲ ଫୁଟୁଥାଏ ॥

ସୁଯୋଗଗୁଡା ବାଟବଣାହୋଇ
ଦୌଡନ୍ତି ୟାଡ଼େ ସାଡ଼େ
ରାହାପାଆନ୍ତିନି ପାହିଛୁଇଁବାକୁ ବେଳେବେଳେ
ଅସହାୟ ନିର୍ଜନିଆ କୋଠରୀଭିତରେ ।

ଚିତ୍କାର କରି କାନ୍ଦନ୍ତି ତୁହାକୁତୁହା
ଖାଲି ସେହି ବଦଳି ଚିନ୍ତାରେ ।।

ରାତିରେ ଦେଖୁଥିବା ସ୍ୱପ୍ନସବୁ
ସକାଳକୁ ମିଛ ହୋଇଯା'ନ୍ତି ।
କାହିଁ କେତେଦିନୁ ମନରେ ବସା
ବାନ୍ଧିଥିବା ଆଶାମାନ
ଥଳକୂଳ ପାଆନ୍ତିନି
ବଦଳି ଢେଉରେ ଖାଲିଭାସୁଥା'ନ୍ତି ।।

ଆକାଶରୁ ପୋଛି ହୋଇଯାଏ
ନୀଳରଂଗ ସବୁ
ସମୁଦ୍ର ଉଛୁଳି ଉଠେ ଅଶାନ୍ତ ଢେଉରେ ।
ମନରେ ଶିହରଣତକ ଜମାଟ ବାନ୍ଧନ୍ତି
ଥରିଥରି ମରୁଥାନ୍ତି ବଦଳି ଭୟରେ ।।

ବଦଳି ଏକ ପୋଷାଶୁଆପରି
ବୋଲମାନେ କ୍ଷମତାର ଖୋଲାପଞ୍ଜୁରୀରେ ।
ବାଧ୍ୟ ଶିଶୁଟିଏ ପରି ଚୁପ୍‌ଚାପ୍ ଠିଆ ହୁଏ
ଚିହିଁକି ଆସୁଥିବା ଚେନାଏ ଚିତ୍କାରରେ ।।

ବଦଳି ଏକ ଯନ୍ତ୍ରଣା
ଗୋଟାଏ ଅପନ୍ତରା ନଗ୍ନମନରେ
ବେଦନାର ହାନ୍ତଅଙ୍କା ନକ୍ସାଟିଏ ।
ସୁଖର ସଳଖ ରାସ୍ତାରେ ଝୁଣ୍ଟୁଥିବା
ଥାକଥାକ ଦୁଃଖର ଓଜନିଆ ବାକ୍ସଟିଏ ।।

ବଦଳିରେ ମୋଡିହୋଇଯାଏ
ସକାଳକୁ ଫୁଟିବାକୁ ଥିବା ଫୁଲକଢିଟିଏ ।
ଅନାୟାସରେ ଆଗେଇ ଯାଉଥିବା
ଆଶାମାନେ ଅଟକିଯାଆନ୍ତି
ପାଦତଳୁ କେଡେ କାଇଦାରେ
କିଏ ଖସେଇଦିଏ
ଶିଉଳି ଲଗା ସମ୍ଭାବନାର ସିଢ଼ିଟିଏ ।।

ବଦଳି ଏକ ମର୍ମାନ୍ତକ ଯନ୍ତ୍ରଣାର
ତିକ୍ତ ଅନୁଭୂତି ।
ସତକୁ ସାମ୍ନା କରିବା ବାଟରେ
ଭେଟୁଥିବା ଅନେକ ମିଛ ପ୍ରତିଶ୍ରୁତି ।। ❑❑

# ବାର୍ଦ୍ଧକ୍ୟର ବିଳାପ

କିଛି ମିଛ ଓ କିଛି ସତ ର ପୃଥିବୀ
ରାଣ ପକାଇ କହିଛି ନ ଯିବାକୁ ବୈକୁଣ୍ଠକୁ
ସମର୍ପି ନ ଦେବାକୁ
ସଂଚିତ ପୁଣ୍ୟକୁ ଈଶ୍ୱରଙ୍କ ହାତରେ
ସାନିଧ୍ୟର ସଂଳାପକୁ ବାଜି ନ ଲଗାଇବାକୁ
ସମର୍ପଣର ପର୍ଣ୍ଣାପାଲିରେ
ଆହତ ଅସମର୍ଥ୍ୟର ଆହାପଣକୁ
ନ ପଚାରିବାକୁ ପରିଚୟର ପ୍ରଶ୍ନଟିଏ ।

ଚୁପ୍‌ଚାପ୍ ଶୋଇଯାଇଛି ଜହ୍ନରାତି
ଆକାଶର ମେଳା ଅଗଣାରେ
ଯୋଜନ ଯୋଜନ ଦୂରତାର ପାହାଡରେ
ଜଳ ଜଳ ଦିଶୁଛି ବୈରାଗ୍ୟର ପାହାଚ ।
ଭାରି ଭାରି କ୍ଳାନ୍ତିର ପଣତ ତଳେ
ଆଶ୍ରା ନେଇଛି ଅସୁମାରୀ ସ୍ୱପ୍ନ ଅପହଞ୍ଚ ॥

ନୈରାଶ୍ୟର ନିରବତା ଏକାକୀ
ଆସୁଛି ସାଥି ହେବାକୁ ଅଧୁରା ସ୍ୱପ୍ନ ସହ
ପରିଚିତ ପ୍ରତୀକ୍ଷାକୁ ଆପଣାଇବାକୁ

ଚିରାଚରିତ ଢଙ୍ଗରେ ନିର୍ବିବାଦରେ
ଅସମାପ୍ତ ଆଶାର ରକ୍ତାକ୍ତ କ୍ଷତରେ
ମାଖିବାକୁ ଚେନାଏ ଚେତନା ।
ପରଖିବାକୁ ସୁପ୍ତ ପ୍ରାଣର ରୁଦ୍ଧ କୋଠରୀରେ
ବନ୍ଦୀଥିବା ଗୁପ୍ତ ସମ୍ଭାବନା ॥

ମିଛିମିଛିକା ସତରେ ଥରୁଛି ବାର୍ଦ୍ଧକ୍ୟ
ନିମିଷକେ ପାଲଟୁଛି ନିଃସହାୟ
ଚିତ୍କାରଟିଏ ଚିହିଁକି ଆସୁଛି ବେଳେବେଳେ
ପରିଣତ ବୟସ ଦେହରୁ
ସମ୍ପର୍କର ସେତୁବନ୍ଧ ଭୁଷୁଡ଼ି ପଡୁଛି
ଅଚାନକ ଅହଙ୍କାରର ଦୌରାତ୍ମ୍ୟରେ ।
ବିଷୟ ବାସନାରେ ଅହରହ
ଅନ୍ଧ ପାପକର୍ମମାନେ ମଥାପିଟି କାନ୍ଦୁଛନ୍ତି
ବୈକୁଣ୍ଠକୁ ଯିବା ସଡ଼କ ପଥରେ ॥ ❑❑

# ପ୍ରିୟତମା

ମମତାର ମାଟିଦେହ କଣ୍ଢେଇ ସାଜିଛି
ମସୃଣ ମନର ଆଇନା ଦେହରେ ।
ଶବ୍ଦର ସମୁଦ୍ର ଆଜି ମିଶି ଯାଇଅଛି
ସଂପର୍କର ନୀଳନୀଳ ତରଙ୍ଗ ସାଥୀରେ ।।

ଆହତ ଆତତାୟୀଟିଏ ମାତିଅଛି
ବିଳପି ଉଠୁଥିବା ମାଂସର ସହରେ ।
ସାନ୍ନିଧର ସୌଧ ଗଢ଼ିଦେଇଅଛି
କବଳିତ ମୁହୂର୍ତ୍ତର ରତ୍ନବେଦୀ ପରେ ।।

ବେଦମତୀ ନଦୀଟିଏ ଉଛୁଳୁଛି
ଲାଜବତୀ ଫୁଲଟିଏ ମହକୁଛି
ନାଉଡଙ୍କ ସାପପରି ଗୁଡ଼େଇ ହେଉଛି
ଶବ୍ଦରେ, ସ୍ପର୍ଶରେ, ରୂପ, ରସ ଓ ଗନ୍ଧରେ
ଅହରହ ବିଷୟ ବାସନାରେ ।।

ମନର ଆବେଗ ଓଟାରି ଆଣୁଛି
ବେଳେବେଳେ ଲୋହିତ ସୂର୍ଯ୍ୟକୁ

ମହାଶୂନ୍ୟରୁ ଦେହର ନୀଳ ଚକ୍ରବାଳ
ରାତିର ସରହଦ ଡେଇଁ
ହସିହସି ଆସୁଛି ବିମୁଗ୍ଧ ସକାଳ ।
ପୋଷପୋଷ ପୌରୁଷକୁ ସାଥୀକରି
ଚୁପ୍‌ଚାପ୍ ବସିଥିବା ପୌଷ ଜହ୍ନରାତି
ମୌନ ଅଭିସାର
ତାରୁଣ୍ୟର ତରଙ୍ଗରେ ଝାସ ଦେଉଥିବା
ଦଲକାଏ ଝାଞ୍ଜିର ପ୍ରକୋପ
ପ୍ରଶ୍ନକରେ ମୋତେ ବାରଂବାର
ସାତତାଳ ସମୁଦ୍ର ବି ନିରବି ଦେଇଛି
ମାଟି ପିଣ୍ଡ ନୀଳ ଉପତ୍ୟକା ।
ବିଷର୍ଣ୍ଣ ବିପନ୍ନ ଦେହେ ଚନ୍ଦନ ମାଖୁଛି
ନିଭୃତ ମୋ ମନର ନାୟିକା ।।

ହସର ହିସାବ ରଖୁନାହିଁ
ଗଣ୍ଠିଦେଇ ପଣତ କାନିରେ
କାନ୍ଦର ବଜାର ଖୋଲି ନାହିଁ
କରୁଣାର ଗଳିକନ୍ଦି ପରେ
ସବୁଥିରେ ସମବୁଦ୍ଧି ସମପରିଚୟ
ଗର୍ବ ଦମ୍ଭ ଅହଙ୍କାର ହୋଇଛି ବିଲୟ
ମାଟିର ମଣିଷଟିଏ ସୁବର୍ଣ୍ଣପ୍ରତିମା
ନିଖର୍ବ ମାଣିକ ମୋତି ମୋର ପ୍ରିୟତମା ।। ❑❑

# ଅପମୃତ୍ୟୁ

ସକାଳ ନାଇଚି ଆଲୁଅର
ଏକ ମଣିମାଳା ସମୟ ପିଠିରେ ନାଉ ହୋଇ
ହାତରେ ଧରିଚି ମହକୁଥିବା ଫୁଲର ସୁରଭି
ନିଦ ମଳମଳ ଆଖିରୁ
ଭଲ ଭାବରେ ସରି ନଥିବା ପାହାନ୍ତି ସପନ
ଓ ଖବର କାଗଜରେ ବାହାରିଥିବା
କେଉଁ ଏକ ଯୁବତୀର ଅପମୃତ୍ୟୁ ।

ସାତ ସାନ ଦିଅର
ଓର ଉଣ୍ଡି କାଞ୍ଜିରେ ମିଶାଇଛି ଜହର ।
ସମ୍ପତ୍ତି ଲୋଭରେ ଯା' ହୋଇଛି ବଇରି
ପରପୁରୁଷ ସାଂଗେ ଭାବ
ନିନ୍ଦା ଅପବାଦ ଦେଇ
ଗୋପନରେ ପଠାଇ ଦେଇଛି ଯମପୁର ।।

କାଆଁଲି ପରି ଲାଗୁଛି
ଗୋରା ତକତକ ସୁନା ଦିହଟା
ଚମ୍ପାକଢ଼ି ପରି, ଭାଙ୍ଗି ପଡୁଥିଲା ବଅସ
ନଥିଲା ଘରର ପିଲାଟିଏ ବୋଲି

ସହୁଥିଲା ଗଞ୍ଜଣା, ଶାଶୁ
ନଣନ୍ଦ ସଂପୁଥିଲେ ସବୁବେଳେ
ଦିହକ ଯାକରେ କମେଇଥିବା
ସବୁକିଛି ବାପ ଅଜାଡ଼ି ଦେଇଥିଲେ ବି
ଅଣ୍ଟି ପୁରୁ ନଥିଲା କାହାରି ।
ମାଡ଼ଗାଳି ଖାଇ ଥରକୁ ଥର
କାନ୍ଦଭିତରୁ କୋହ ଆସୁଥିଲା ବାହାରି ।।

ଗେରସ୍ତ ଥିଲା ବିଦେଶରେ
କେତେଥର କହିଛି ନବ ବୋଲି
ହେଲେ ନେଲାନି ।
ଗଲାସନ ଦଶ'ରାରେ ଆଣିଥିଲା ସମ୍ବଲପୁରୀ
କୁମ୍ଭପକା ଶାଢ଼ି ଯେ ନଣନ୍ଦ ଝାମ୍ପିନେଲା ହାତରୁ ।
ଦେଖେଇ ଶିଖେଇ କେତେ କଥା କହିଲା
ଭାର ଥୋର ଆସି ନ ଥିଲା
ବୋଲି ବାପଘରୁ ।।

ଖେଳନା ଦେଖେଇ ଛୁଆଟିକୁ
ଭଣ୍ଡେଇଲାପରି ତା'କୁ କରିଥିଲେ
କାଠର କଣ୍ଢେଇ
ଟଙ୍କା ସୁନା କିଛି ଲୋଡ଼ା ହେଲେ
ବାପଘରକୁ ଦେଉଥିଲେ ପଠେଇ
ଜୀବନ ହାରିବ ବୋଲି
କେତେଥର ଭାବିଛି ହେଲେ ପାରିନି
ଆଜି ନ ଭାବିଁଲେ ବି
ଆପେ ଆପେ ପହଞ୍ଚିଯାଇଛି ମରଣ ପାଖରେ
ବିନା ବାଧାରେ, ବିନା ଯୋଗାଡ଼ରେ ।। ❑❑

# ଅନ୍ଧ ଅର୍ଗଳି

ଅନ୍ଧ ଅର୍ଗଳିର ଅମୁହାଁ ଦେଉଳେ
ମୁଁ ଏକ ଅଶୁଭ ସଂକେତ
ସୁପ୍ତ ପୃଥିବୀର ଶୂନ୍ୟ ପରିଧିରେ
ମୁଁ ଏକ ଅଶାନ୍ତ କପୋତ ।

ମୋ ଦେହରେ ବାଘ ମାଡିବା ଦିନୁଁ
ମୁଁ ଖୋଜୁଛି ନିର୍ଜନ ନୀଳ ଉପତ୍ୟକା
ଅରଣ୍ୟର ଘଞ୍ଚ ସବୁଜିମା ଭିତରେ
ଖୋଜିଲା ଖୋଜିଲା ଆଖିର ପଲକ
ଛାଇ ଛାଇ ଅନ୍ଧାରରେ ଅନୁଶୋଚନାରେ
ମୁଁ ଖୋଜୁଛି ମୃତ୍ୟୁକୁ ସଡ଼କ ।

ମୋ ଦେହକୁ ଦୁର୍ବଳକରି
କାହିଁ ଦେଖାଇଲ ଭୂମଣ୍ଡଳ
କୋଟି କୋଟି ଭାବନା ଭିଆଇ ମନରେ
କାହିଁ ଆଙ୍କିଦେଲ ପ୍ରେମର ଲୋହିତ ସ୍ୱାକ୍ଷର
ଶରଧାରେ ସୁବିଧାରେ ସମର୍ପି ଦେଲ
ସଞ୍ଚିତ ତୁମର ସବୁକିଛି
ଅଝଟ ମନକୁ ମୋର କାହିଁ ବୁଝାଇଲ ?

କିନ୍ତୁ ହାୟରେ କପାଳ !
ଦିନ କେଇଟା ଭିତରେ
କେମିତି ବଦଳି ଗଲ ?
ଖଣ୍ଡିଆଖାବରା କରି
ଆହତ ମନକୁ ମୋର
ପଠାଇଦେଲ ପ୍ରେତପୁର ।

ତୁମେ ତ ଖାଉଛ, ପିଉଛ
ବୁଲୁଛ ନିରାପଦରେ ବସୁଧାରେ
ଆଶ୍ୱାସନାର ଆହାପଦ ବି
ମୋ ପାଇଁ ବଇରି ସାଜିଛି
ମୁଁ ଘୁରୁଛି ଏକା ଏକା
ଲୁଚି ଛପି ସମୟର ଗୁପ୍ତ ପ୍ରହରରେ ।
ମୁଁ ଏକ ପୂର୍ଣ୍ଣ ଅନୁଭବ
ପରଖି ନିଅ ମୋତେ
ମୁଁ ଏକ ଅଲୋଡ଼ା ଜୀବନ
ମୁକ୍ତି ଦିଅ ମୋତେ ।। ❑❑

# ମୃତ୍ୟୁକୁ ସାମ୍ନା କରି ନପାରି

ଅଗଣିତ ଆଗ୍ରହମାନେ ହଜି ଯା'ନ୍ତି
ମୃତ୍ୟୁକୁ ସାମ୍ନା କରି ନ ପାରି
ବଞ୍ଚିବାର ଇଚ୍ଛା ରାଇଜରେ
ମନରେ ମମତାର ଢେଉ
ସ୍ୱର ତୋଳେ କାବ୍ୟିକ ଅନୁଭୂତିକୁ
ଆଧାର କରି ସ୍ମୃତିର
ସ୍ୱପ୍ନ ପାରାବାରେ ।

ମାୟାରେ ମୋହିତ କରି
ପ୍ରକୃତି ରଚେ ଇନ୍ଦ୍ରଜାଲ
ନଚାଏ ସକଳ ପ୍ରାଣୀଙ୍କୁ
କାଠର କଣ୍ଢେଇ ସମାନ
କର୍ମକୁ କବଳିତ କରେ
ଇନ୍ଦ୍ରିୟର ବିଷୟ ଚିନ୍ତନ
କର୍ମଫଳମାନେ କାମନାର
କପାଳରେ କାଟିଯା'ନ୍ତି ଭାଗ୍ୟରେଖା
ଅପେକ୍ଷାରତ ଆଶା ଓ ଆଶଙ୍କା ।

ମୁଁ ହୋଇଯାଏ ମୋ ଅଜାଣତରେ
ରାଜା କେତେବେଳେ
ମୋରି ରାଜ୍ୟ ବ୍ୟାପିଯାଏ
ଆଖି ପାଉନଥିବା ଦୂର
ଦିଗ୍‌ବଳୟ ଯାଏ
କର୍ତ୍ତାପଣ କାବୁ କରିନିଏ
ମୋତେ ଓ ମୋର ବିବେକକୁ
ଅହଂଭାବ ଦଂଶନକରେ
ମୋ ଘରିକଡ଼େ ଥିବା
ପୃଥିବୀର ପରିଧିକୁ ।

ସତରେ ମରିବା ଅପେକ୍ଷା
ମିଛରେ ଦୀର୍ଘାୟୁ ହେବାକୁ ଭଲଲାଗେ
ଧର୍ମରେ ଚଳିବା ଅପେକ୍ଷା
ଭଲ ଲାଗେ ବିଧର୍ମି ହେବାକୁ
ବଂଧନରୁ ମୁକ୍ତ ହେବା ଅପେକ୍ଷା
ବଂଧନଯୁକ୍ତ ହେବା ଶ୍ରେୟସ୍କର ହୁଏ
ବଂଚିବାର ଉପାୟ ଖୋଜି ବାହାର କରିବା
ହାର୍ ମାନିଯାଏ
ନିରୁପାୟ ହୋଇ ମରିବା ପାଖରେ । ❑❑

# ଅସହାୟତା

ମୋ ପାରିଲା ପଣିଆକୁ
ବେଖାତିର କରି ସିଏ ହସିଦେଲା
ଚିରି ହୋଇଗଲା ମୋ ଭିତରଟା
ଟୁକୁରା କାଗଜପରି
ଅନେକ ଦିନରୁ ଦାନାବାନ୍ଧି
ରହିଥିବା ଉତ୍କଣ୍ଠା ଗୁଡ଼ିକ
ଅସହାୟ ମନେକଲେ
ଅଜଣା ଆତଙ୍କର ପରିକଳ୍ପନାରେ ।

କେତେକାଳ ଲୁଚିବି ମୋ ଛାଇକୁ
ବାଟ କଢ଼େଇ ନେବି ମୋ ବୟସକୁ
କେଉଁ ଏକ ଧର୍ତ୍ତବ୍ୟ ଅପରାଧରେ
ଆହତ ମନକୁ କେମିତି ବୁଝେଇବି
ମୋର ଅପାରଗତାକୁ
ସମସ୍ତେ ନିରେଖି ଦେଖିବେ
ଓ ଗୋଟିଏ ପରେ ଗୋଟିଏ
ଘଟଣା ବଖାଣି ବସିବେ ।

ମୋ ଅସହାୟତାର
ସୁଯୋଗନେଇ ଥଟ୍ଟା ପରିହାସ

କରିବେ ମୋ ଘରିକଡ଼େ ଥିବା
ପରିବେଶ ଓ ଚିତ୍ରିତ ସହର
ମୁଁ ଚିହ୍ନି ପାରିବି ନାହିଁ
ମୋର ପରିଚିତମାନଙ୍କୁ
ଆଦରି ନେବିନି ମୋ ସହିତ
କଟିଥିବା ଅନ୍ତରଙ୍ଗ
ମୁହୂର୍ତ୍ତ ସବୁକୁ ।

ସ୍ୱପ୍ନର ସାରାଂଶ ସବୁ
ବାହାରି ଆସିବେ ଏକା ନିଶ୍ୱାସକେ
ଅବିଶ୍ୱାସର ଅର୍ଗଳିରୁ
ଅସ୍ୱାଭାବିକ ପରିସ୍ଥିତିରୁ
ସୁଧୁରିବା ପାଇଁ
ମୋ ଅଜାଣତରେ ବା
ଜାଣତରେ ହେଉ
ପାପସବୁ ଓଟାରି ଆଣିବେ
ମୋ ଭିତରୁ ପ୍ରାୟଶ୍ଚିତକୁ
ଜୀବନକୁ ପୁଣିଥରେ
ନୂଆକରି ଗଢ଼ିଦେବା ପାଇଁ ।
ଆହତ କପୋତଟିଏ ପରି
ମୁଁ ଖୋଜିବି ମୋ ପାଇଁ
ନୂଆ ରାହାଟିଏ
ପରାଜିତ ସୈନିକ ପରି
ମୁଁ ରହିଁବି ଗୋପନରେ
ମୋପାଇଁ ସାହାଟିଏ । ❑❑

# ଜନ୍ମ

ଅନାବୃତ ଆକାଶର ଦେହେ
ଅଗଣିତ ତାରା ମେଳେ
ଲୋଭିଲା ଆଖିରେ କିଏ ଅନାଇଛି ।
ସଂପର୍କ ଡୋରିରେ ସିଏ ଶୂନ୍ୟରେ ଝୁଲୁଛି ।।

ଆଖିରେ ତା’ କୋଟିଏ
ପରାଣର ଆଶା
ମୁହଁରେ ତା’ ଅନାବିଳ
ପ୍ରେମ ପରିଭାଷା
ମୋର ହେତୁ ହେବା ଦିନୁ
ମୁଁ ଦେଖୁଛି ତାକୁ
ଚୁପ୍‌ଚାପ୍ ଚୈତକରେ
ଚଢ଼ି ବୁଲିବାର
ଅନ୍ଧାରର ଶୂନ୍ୟ ଇଲାକାରେ ।
ପ୍ରେମର ପାରିଜାତ ହୋଇ ଫୁଟିବାର
ପ୍ରଣୟର ଖୋଲା ବଗିଚରେ ।।

ଅର୍ଥହୀନ ଶବ୍ଦସବୁ
ଅଝଟ ହୁଅନ୍ତି ବେଳେବେଳେ

ଅପଲକ ଦୃଷ୍ଟି ଆଢୁଆଳେ
ଢଳ ଢଳ ସୁନାଦେହ
ବିଞ୍ଚିଦିଏ ଖୁସି ଓ ସେନେହ
ମାଆ କୋଳେ ଶିଶୁଟିର
ଦରୋଟି ହସରେ ।।
ନିତି ଦେଖାହୁଏ ତା' ସାଥିରେ
ସଂଜବେଳେ ମାଛି ଅନ୍ଧାରରେ
ନିଃଶବ୍ଦରେ ଆସେଯାଏ
କାହା ଇଙ୍ଗିତରେ
ଭାରି ଭାରି ଆକାଶ ଛାତିରେ ।
ପ୍ରତିଶ୍ରୁତିର ପ୍ରଦୀପ ଜଳାଇ
ପ୍ରତୀକ୍ଷାର ରତ୍ନବେଦୀପରେ ।।

ସ୍ରଷ୍ଟାର ସୃଷ୍ଟି ସିଏ ଏକ
ସଉଖୀନ କାଚଘର
ଶୀତଳତାର ପ୍ରଲେପରେ
ମାଖିଛି ଦେହକୁ ତା'ର
ମନମନ୍ଦିର ତା' ମୁକୁଳା ରଖିଛି
କାହାପାଇଁ କିଏ ଜାଣେ
ବିଶ୍ୱାସର ବିଷ ବୃଷ୍ଟି ହୋଇଯାଏ
କହ କିବା ଅକାରଣେ ।

ଦେହ ତା'ର - ସ୍ୱପ୍ନପାରାବାର
ମନ ତା'ର - ଅତି ସୁକୁମାର
ରୂପ ତା'ର - ପ୍ରୀତି ଗନ୍ତାଘର
ଭାଷା ତା'ର - କୋଟି ହୃଦୟର ।

ନିରିହ ଜନ୍ହ ରାତି
ଛୋଟ ଛେଳି ଛୁଆଟି
ନୂଆବର୍ଷ ପାଳିଲା ପରି
ହସି ହସି ମରି ଯାଉଛି
କାହା ଭରସାରେ ।
ରୂପର ପସରା ତା'ର
ଖୋଲି ଦେଇଛି
କ୍ଷତବିକ୍ଷତ ହେବାପାଇଁ
କାହା ଇସାରାରେ ।। ❑❑

# ଖେଳନା

ସମୟର ହାତ ପାପୁଲିରେ
ଜୋର ଜବରଦସ୍ତ ଧରାଇ ଦେଇଛି କିଏ
ଅନଭିଜ୍ଞ ମନର ଆବେଗକୁ ଖେଳନାକରି ।
ଅନୁଭୂତିର ଅଭିଆଡ଼ି ଝିଅଟି
ବିଶ୍ୱାସର ଅନୁରକ୍ତିରେ ଶୋଇଗଲା ପରି ।।

ଖେଳନା କରି ନଚଉଚି କିଏ ବୟସକୁ
ସୋରାଏ ସଂକଳ୍ପକୁ
ସାଇତି ରଖିଥିବା ସାନ୍ନିଧର ସ୍ମୃତିକୁ ।
ସହଜାତ ପ୍ରବୃତ୍ତିକୁ
ଓ ଅପେକ୍ଷାରତ ଭବିଷ୍ୟତକୁ ।।

ଅତୀତ ଫିଙ୍ଗୁଚି ବଡ଼ ଢେଲାଟିଏ
ବର୍ତ୍ତମାନର ଆଇନାକୁ
ମିଛ ବାହାନାରେ ସତ୍ୟକୁ
ସାଉଁଟି ନେବାକୁ ଖେଳନାଟିଏ କରି ।
ଗରଳ ନାଁରେ ଢଳଢଳ
ସୁମଧୁର ସୁଧାକୁ
ନିମିଷକେ ପିଇଗଲା ପରି ।।

ଖେଳନା ହୋଇ
ଖେଳିବାକୁ ଭଲ ଲାଗେ
ନିରିହ ଜହ୍ନରାତିକୁ
ଫଗୁଣର ପ୍ରତିଟି ଗଳିକନ୍ଦିରେ ।
ଖେଳନା ହୋଇ ନାଚିବାକୁ
ଭଲ ଲାଗେ ପାଗଳ ବର୍ଷାକୁ
ଶ୍ରାବଣର ପ୍ରତି ଇସାରାରେ ।।

ଖେଳନା ଥିବାଯାଏ
ଖେଳ ଚାଲିଥାଏ
ଜୀବନ ଥିବାଯାଏ
ଜୀବ ଜିଇଁଥାଏ । ❑❑

## ଗୁଳି ବନାମ ଫୁଲ

ଫୁଲ ଫୁଟେ କଢ଼ିଟିରୁ
ଗୁଳି ଫୁଟେ ବାରୁଦରୁ
ଫୁଲରୁ ଝରିଯାଏ ଅତର
ଗୁଳିରୁ ବହିଯାଏ ରୁଧିର ।
ଫୁଲ ଫୁଟେ କାହାର ପରଶେ
କିଏ ଆସେ ତା'ର ଚଉପାଶେ ଛଦ୍ମବେଶେ ।

ଆଖି ଖୋଲିଦିଏ ଅନ୍ଧାରର କିଏ
ରଂଗ ମାଖିଦିଏ ପଥରର ଦେହେ
ଫୁଲର ଗାଲିଚା ଖୋଲିଦିଏ
ବିଜୟର ପଥ ।
ଫୁଲର ଋଦର ଢାଙ୍କିଦିଏ
ସହିଦ୍‌ର ରଥ ।।

ଫୁଲ ବର୍ଷାହୁଏ ଶ୍ରଦ୍ଧାରେ
ଫୁଲ ଚଢ଼ାହୁଏ ଭକ୍ତିରେ
ଫୁଲ ବିଛାଯାଏ ବିଜୟରେ
ଫୁଲ ପିନ୍ଧାଯାଏ ପ୍ରେମରେ

ଫୁଲ ଦିଏ ବାର୍ତ୍ତା ଶାନ୍ତି, ମୈତ୍ରୀ ଓ ମୁକତିର
ଫୁଲ କହେ କଥା ଦୟା କ୍ଷମା ଓ ପ୍ରଗତିର
ଗୁଳି ଫୁଟେ ପିଶାଚ ହାତରୁ
ଦୂରରେ ପାହାଡ଼ ଖୋଲରୁ
ଅବା ଗଛପତ୍ର ଘଞ୍ଚ ଅରଣ୍ୟରୁ
କେଉଁ ଏକ ରାକ୍ଷସ ଭାବ
ପଡିଆରା ଜମାଏ ଘରିଆଡ଼େ
ମେଦିନି କମ୍ପିଯାଏ
ଘମାଘୋଟ ଯୁଦ୍ଧ ଡାକରାରେ
ମୁହୂର୍ତ୍ତକେ ବିପନ୍ନ କରିଦିଏ
ଧନ ଓ ଜୀବନ ।
ରକ୍ତର ହୋରି ଖେଳ ତାଣ୍ଡବ ରଚେ
ବାରୁଦ ଧୂଆଁରେ ଆକାଶ
ଦିଶଇ ବିବର୍ଣ୍ଣ ।।

ଗୁଳି ବର୍ଷେ କମାଣରୁ
ଗୁଳି ଫୁଟେ ବନ୍ଧୁକ ମୂନରୁ
ଗୁଳି ଭେଦେ ଅଂଗ ପ୍ରତ୍ୟଙ୍ଗରେ
ଗୁଳି ରଚେ ମୃତ୍ୟୁ ଅକାଳରେ
ଗୁଳିଦିଏ ବାର୍ତ୍ତା ହିଂସା, ଦ୍ୱେଷ ଓ କଳହର
ଗୁଳି କହେ କଥା ଶକ୍ତି, ଭୟ ଓ ଅଶାନ୍ତିର
ଆମେ ଗୁଳି ଚାହୁଁ ନାହିଁ ଫୁଲ ଚାହୁଁ ।
ଆମେ ଶକ୍ତି ଚାହୁଁ ନାହୁଁ ମୁକ୍ତି ଚାହୁଁ ।। ❑❑

# ଠାକୁର

ଠାକୁର ଅସ୍ତବ୍ୟସ୍ତ ହେଲେ
ଧୂପର ଧୂଆଁରେ
ମନ୍ଦିର ବେଢ଼ା ଥରିଲା
ଘଣ୍ଟ ଆଳତିରେ
ଭକ୍ତମାନେ ଆଖିବୁଜି
ମନାସିଲେ କେତେ କ'ଣ
କେବଳ ନିଜପାଇଁ
ପୂଜା ବାହାନାରେ ।

ଠାକୁର ଠକିଗଲେ ମିଛ ଭକତିରେ
ଧର୍ମଅଧର୍ମର ତରାଜୁରେ
ତଉଲିପାରିଲେନି ଛଳନାର ଗୁପ୍ତଧନ
ଏଡ଼ାଇ ପାରିଲେନି ଭକ୍ତର ସେ
କାମନାର ନୀଳ ନିମନ୍ତ୍ରଣ ।

ଠାକୁର ଓଲହାଇଲେ ମର୍ତ୍ତ୍ୟକୁ
ଜନ୍ମମୃତ୍ୟୁ ଜରା ବ୍ୟାଧିକୁ ଅନୁଭବିବାକୁ
ଜନ୍ମରେ ଆନନ୍ଦ ଉଲ୍ଲାସ

ମୃତ୍ୟୁରେ ଶୋକର ଉଚ୍ଛ୍ୱାସ
ଜରାର କରାଳ ବିଭତ୍ସ ଦୃଶ୍ୟ
ବ୍ୟାଧିଗ୍ରସ୍ତ ଶରୀରର ବଞ୍ଚିବାର ମୋହ
ସବୁକୁ ତାଂକ ନିକିତିରେ ତଉଲିଲେ ।

ଏଠି ଆତ୍ମାଅଛି - ଆତ୍ମୀୟତା ନାହିଁ
ମନ ଅଛି - ମାନବିକତା ନାହିଁ
ଭାବ ଅଛି - ଭକ୍ତି ନାହିଁ
ସ୍ୱପ୍ନ ଅଛି - ସାର୍ଥକତା ନାହିଁ

ଠାକୁର ନିଦ୍ରାଗଲେ
ଭକ୍ତମାନେ ପ୍ରମାଦ ଗଣିଲେ
ପୂଜା ଆରାଧନା ହୋମ ଯଜ୍ଞ
ମନ୍ତ୍ରପାଠ ସବୁ ତୁଚ୍ଛ ହେଲା
କାମନାର କାମଧେନୁ
ଲୁଚିଗଲା ଅସଫଳ ସଂକଳ୍ପ ଦେହରେ । ❑❑

# ଅନୁଚିନ୍ତା

ସତର୍କତାର ସହିତ ଲୁଚି ଯାଆନ୍ତି
ମୁହୂର୍ତ୍ତ ଗୁଡ଼ାକ କାଲେ ସାମ୍‌ନା
କରିବାକୁ ପଡ଼ିବ
"ଜୀବିକା ଓ ଜୀବନ"
"ଭାଗ୍ୟ ଓ ଭଗବାନ" ।

ହନ୍ତସନ୍ତ ବସନ୍ତର ମୃଦୁ ମଳୟରେ
ଭାସିଆସେ କାହୁଁ ବେନାମୀ
କାମନାର ଉତ୍କଟ ଗନ୍ଧ
ନଥାଏ ସେଥିରେ ଆତ୍ମୀୟତା
କିଂବା ଭାବ ପ୍ରବଣତା
ସୁନେଲି ସ୍ୱପ୍ନର ନିବିଡ଼ତା
ଅବା ନିଷ୍ପାପ ମନର ସରଳତା
ଖାଲି ଯାହା କେଉଁ ଅଖ୍ୟାତ
ଅଜଣା ଗଳିରେ କାମାତୁର ଅବିବେକୀ
ନିଷ୍ଠୁର ହୃଦୟର ମିଥ୍ୟା ପ୍ରତିଶ୍ରୁତି
ଅହରହ ସଂଗ୍ରାମରତ ଆତ୍ମାଟା
ପାଏନି ରାହା ବଞ୍ଚିବାକୁ

ଢୋକେପିଇ ଦଣ୍ଡେ ଜିଇ ନୀତିରେ
ଛଳନା ଓ ପ୍ରବଞ୍ଚନାର
ଦୁର୍ଭେଦ୍ୟ ଅନ୍ଧକାର ଭିତରେ
ଲୁହ ଝରାଏ - ହାତେଇ ପାରେନି
କଳଙ୍କର ସେଇ କାଳରାତି
ଅପସରି ଯିବା ଅପେକ୍ଷା
ପାଶୋରି ପକାଇବା ଭଲ
ଅତୁଆ ସୂତାରୁ ଖିଅ ଖୋଜିଲା ପରି
ଗୁଡ଼େଇ ତୁଡ଼େଇ ଗୋଳେଇ ଘାଣ୍ଟି
ହେଉଥିବା ଉଚ୍ଛନ୍ନ ମନଟା
ଘଟଣା ଓ ଦୁର୍ଘଟଣାର ଚଉହଦି
ଡେଇଁ ଯିବାକୁ ଉଦ୍ୟତ ହେଲେ ବି ପାରୁନି
କାଇଁକିନା ଆଗରେ-
ଆଶା ଓ ଆଶ୍ୱାସନାର ପାଚେରୀ
ବିଶ୍ୱାସ ଓ ସମ୍ଭାବନାର ବିପଣୀ

ଖେଳରେ ଜିତିବା ଅପେକ୍ଷା
ହାରିବାକୁ ଭଲ ଲାଗେ ନିଜଠାରୁ
ବଞ୍ଚିବା ଅପେକ୍ଷା ବଞ୍ଚାଇବାକୁ
ଭଲ ଲାଗେ ନିଜେ ମରୁମରୁ
ନିଶ୍ୱାସ ନେବା ଅପେକ୍ଷା ଭଲ ଲାଗେ
ଅଣନିଶ୍ୱାସୀ ହୋଇ
ବିଶ୍ୱାସ ଜନ୍ମେଇବାକୁ
ଭଲ ଲାଗେ ଦୁଃଖ ଆପଣେଇ
ସୁଖ ବାଣ୍ଟିବାକୁ ଓ
ସମୟ ହାତରେ ବନ୍ଧାପଡ଼ି
ଅସମୟକୁ ବାଟେଇ ଦବାକୁ । ❑❑

## ମୃତ୍ୟୁ ସହ ସହବାସ

କଂକାଳ ମାନଂକୁ ଗୋଟାଇ ଆଣି
ଦେଖ, ଜୀବନଟା କେମିତି ଜିଇଁଚି
ଶବ୍ଦମାନଙ୍କୁ ନିଃଶବ୍ଦରେ ପଚ୍ଛରିବୁଝ
ଆହତ ମନଟା କିପରି ଆଘାତ ପାଇଛି ।

ସୂତା ଖିଅଟାରେ ଝୁଲୁଚି ଜୀବନ
ମୃତ୍ୟୁର ଦରଜା ଦିଶୁଚି ଆଗକୁ
ଅସହାୟ ଲାଗୁଚି କାହିଁ ଏବେ ଏବେ
କ୍ଲାନ୍ତିର ଓଢ଼ଣାତଳେ ଅଶାନ୍ତ ଆତ୍ମାକୁ
କଞ୍ଚା ବୟସରେ ମୋର ଗୁଡ଼ି ଉଡ଼ାଇଲି
ଆକାଶର ଖୋଲା ଛାତିପରେ କାହିଁ କେତେଦୂର
ପବନରେ ପକ୍ଷୀରାଜ ଚଢ଼ି ଆସ୍ଥାନ ଜମାଇ
ଖେଦିଗଲି ସାରା ଭୂମଣ୍ଡଳ ।

ଦିନ କେଇଟାରେ ତୁଟିଗଲା ସେହି
ରାଜା ହେବାର ଆତୁରିଆ ନିଶା
ସିଂହାସନ ଦିଶିଲା ଶୂନ୍ୟ ଓ ବିବର୍ଣ୍ଣ
ଅବୁଝା ରହିଲା ମୋ ହୃଦୟର ଭାଷା

ଭାରିଭାରି ଲାଗିଲା ପୃଥିବୀ
ଥରିଲା ମୋ ଭିତର ଚୌହଦି
ଖୋଜିଲା ଖୋଜିଲା ଆଖିରେ ଲୁହଁଲି
କାହିଁଗଲେ ମୋର ପ୍ରିୟ ସନ୍ତାନ ସନ୍ତତି
ଡରିଗଲି ମରିଗଲି ନିମିଷକେ
ହେଲି ମୁହିଁ ଅବଶ ବିବଶ
ନିରୁପାୟ ହୋଇ ବରିନେଲି
ମୃତ୍ୟୁସହ ଚିର ସହବାସ । ❑❑

# ଅବସର

ସମୟ ସ୍ରୋତରେ
ଭାସିଯା'ନ୍ତି ଆକାଂକ୍ଷାମାନେ
ନୀଳ ଲୋହିତ କାମନା ବୁକୁରେ
ରଂଗଦେଇ ଅକସ୍ମାତ୍ ଉଠିଯା'ନ୍ତି
ସମ୍ଭାବନାର ମଥାନ ଉପରକୁ ।
ପରସ୍ତ ପରସ୍ତ ସ୍ମୃତି ସବୁ ଆବୋରି ବସନ୍ତି
ପାଗଳ ଅତୀତର ଟୋପାଏ ପ୍ରଳାପକୁ ।।

ଘରସାମ୍ନା ବତୀଖୁଣ୍ଟ ମଳିନ ନିଷ୍ପ୍ରଭ
ରାସ୍ତା ଗୁଡ଼ାରେ ଦୋଦୋ ଚିନ୍‌ହା ପାଦ
ବାଲକୋନିଟା ଏକମାତ୍ର ନିରବ ସନ୍ତକ
ସିଗାରେଟ୍, ଚ଼ା କପ୍, ଖବରକାଗଜ ଓ
ଗୁଲିଖଟିର ଆସରକୁ ଆଶ୍ରାକରି
ବଞ୍ଚିଛି ଅଜସ୍ର ମୁହୂର୍ତ୍ତ ।
ଦିନଥିଲା ଖୋଜୁଥିଲି ସମୟର ଶୂନ୍ୟ ସିଂହାସନ
ନିରୁକ୍ତ ବେଳାରେ ସ୍ୱାର୍ଥପରତାର ସୁପ୍ତ ଆସ୍ୱାଦନ ।
ଉଦ୍‌ଭ୍ରାନ୍ତ ପଥିକ ପରି ଅସଫଳ କାମନା ସାଥିରେ
ନିଜକୁ ନିଜପାଖେ କରୁଥିଲି ପୂର୍ଣ୍ଣ ସମର୍ପଣ ।।

ନିରୋଳା ଅନୁରକ୍ତି ଓ ମିଛ ଅଭିବ୍ୟକ୍ତି
ଅନୁଭୂତିର ଭଗ୍ନ ସାରାଂଶ
ମାତ୍ରାଧିକ ମାନସିକତାର ନଗ୍ନ ନମୂନା
ଭିନ୍ନ ଏକ ଜୀବନ ଓ ଯୌବନର
ଉଦ୍ଦାମତା ଭିତରେ ଜୀଇଁବାର
ଯୋଜନା କରୁକରୁ କ୍ରୁସବିଦ୍ଧ ଅଭିସାର
ଲୁଚିଯାଏ ଅସଫଳ ପରିକଳ୍ପନାରେ ।
ବିକଳ୍ପ କିଛି ପାଏନି
ଚିରୁଡ଼ାଏ ସ୍ୱପ୍ନର ଅସହାୟତାରେ ।।

ଭାଗ୍ୟକୁ ଆଦରି କଳାକର୍ମି ହାଇମାରେ
ରକ୍ତ ପାଣିଫାଟିଯାଏ ବିଶ୍ୱାସର ଧମନୀରେ
ଏକାଏକା ଲାଗେ ସ୍ନେହସୁଧା ବସୁଧା
ମୋହ ତୁଟିଯାଏ ବିଷୟ ଜାଲରୁ ।
ଜୀବନ ପାଲଟିଯାଏ ସଇତାନ
ସରିସରି ଆସେ ଆୟୁଷ ଜାତକ ଦେହରୁ ।। ❑❑

# ଗୁପ୍ତ ରହସ୍ୟ

ମନର ମାନଚିତ୍ରରେ ଅଂକା ହୋଇଥିବା
ଇତିହାସର ପୃଷ୍ଠଭୂମି
ଦଳଦଳ ଖାଇ ଗୋଡ଼ଉଥିବା ନିର୍ଜୀବ
ଛାଇଗୁଡ଼ିକୁ ଖୋଜନ୍ତି ସନ୍ତର୍ପଣରେ ।
ବିକାରଗ୍ରସ୍ତ ବିବେକର ବେଳାଭୂମି
ଆଦରି ନିଅନ୍ତି ଘଟନା ଓ ଦୁର୍ଘଟନାମାନଙ୍କୁ
ଅପର୍ଯ୍ୟାପ୍ତ ଅନୁଶୋଚନାରେ ।।

ଭାଗ୍ୟ ବି ଭଗାରି ସାଜେ
ଗୋଟି ଗୋଟି କଳାକର୍ମ ଲୁଚିଯା'ନ୍ତି
କାମନାର ପଥର ଛାତିରେ
ଜିଗର କରୁଥିବା ଜିଦ୍ ମାନେ ବି
ହାରିଯା'ନ୍ତି ଲଜ୍ଜା ଓ ଭୟର
ଦର୍ଜ୍ଜା ନିକଟରେ ।

ପୃଥିବୀର ପରିଧି ଘୁଞ୍ଚିଯାଏ
ଆଖିର ପଲକ ଦେହରୁ
ଟୋପାଏ ସତ୍ୟର ସାନିଧ

ସ୍ୱପ୍ନ ହୁଏ ଭାବନାର
ଖିଅ ଧରୁ ଧରୁ
'ହଁ' ସବୁ ଶୋଇ ଯା'ନ୍ତି
ବଦ୍‌ନାମ ଗଳିର ଝିଅପରି ।
'ନାହିଁ'ର ନିଆଁରେ ଜଳିଯା'ନ୍ତି
କେତେକେତେ ଆଶା ଅସୁମାରି ।।

ବେଳାମାନେ ଆସନ୍ତି ଅବେଳାରେ
ଜୀବନର ଅପରାହ୍ନରେ
ହେଜେଇ ଦିଅନ୍ତି ହଜେଇ ଦେଇଥିବା
ମୁହୂର୍ତ୍ତମାନଙ୍କୁ ପରିଣାମର
ପ୍ରଶ୍ନବାଚୀ ପରିସମାପ୍ତିରେ
ବିଷର ବଳୟ ଭିତରୁ
ବର୍ତ୍ତିଯିବା କଷ୍ଟକର ହୁଏ ।
ସମୟର ଆବର୍ତ୍ତରେ
ବଞ୍ଚିବାର ରହସ୍ୟ
ଗୁପ୍ତ ରହିଯାଏ ।। ❑❑

# ବଢ଼ି

ଘଲ ପଳାଇଯିବା ଏଠୁ ଯେତେଶୀଘ୍ର
ସଂଜ୍ଞ ରଡରଡ ହେଉଛି
ଆଖି ପିଛୁଳାକେ ଦେଖ ଆଗକୁ
ବଢ଼ି କେମିତି ମାଡ଼ି ଆସୁଅଛି ।

ଜୀବନ ଜିଇଁବାର ବେଳ
ଥଳକୂଳ ମାନୁନାହିଁ
କରାଳ ସ୍ରୋତରେ ତା'ର
ଭାସିଯା'ନ୍ତି ଶବ ମାଳ ମାଳ
ବହୁଦିନୁ ପରିତ୍ୟକ୍ତ
ଇଲାକାରେ ଲୁଚିଯା'ନ୍ତି
କେତେକେତେ ଦୃଶ୍ୟପଟ ।
ନିପଟ ମଫସଲ ଓ
ଚିତ୍ରିତ ସହର
ଏକାକାର ହୋଇଯା'ନ୍ତି
ଦିଶନ୍ତି ଉଦ୍‌ଭଟ ।।

ନିମିଷକେ ତୁଟିଯାଏ
ବଞ୍ଚିବାର ମୋହ

ଧନ ଅର୍ଜିବାର ମୁହୂର୍ତ୍ତସବୁ
ହଜିଯା'ନ୍ତି ଅସହାୟତାରେ
ଅନ୍ଧହାତରୁ ଆଶାବାଡ଼ି
ଖସିଗଲାପରି
ରଂଗ ଛାଡ଼ିଯାଏ
ଆଲୁଅ ଦେହରୁ ।
ଅନ୍ଧାରର ଗଳି ଫର୍ଦ୍ଦେ ଦିଶେ
ଆତ୍ମାଟି ନିର୍ଜ୍ଜୀବ
ପିଣ୍ଡଟାରୁ ବାହାରୁବାହାରୁ ।।

ଦୁଇକୂଳ ଲଂଘି
ଆଗକୁ ମାଡ଼ଇ ବଢ଼ି
ବନ୍ଧ କଡ଼େ କେତେ କେତେ
ଆତୁର ମଣିଷମାନଙ୍କ
ଦୀର୍ଘଶ୍ୱାସର ଦ୍ୱାହିଦେଇ ।
ବଙ୍କା ତେଢ଼ା ସର୍ପିଳ
ଗତିକୁ ନଦୀର ସିଧା କରିଦେଇ ।।

ନଦୀର ସେଇ ସୌମ୍ୟକାନ୍ତ ରୂପ
ଧୀରସ୍ଥିର ଅଚଞ୍ଚଳ
ନୀଳନୀଳ ଜଳର ଭଣ୍ଡାର
ପଠାଯାକ ମାଳମାଳ
କାଶତଣ୍ଡୀ ଫୁଲର ସମ୍ଭାର
ଦୁଇକଡ଼େ ଆଖି ପାଉନଥିବା
ବାଲିର ସହର
ହୁଲି ଡଂଗାରେ ମାଛଧରା ଦୃଶ୍ୟ ।

ଓ କୂଳରେ କଟାଯାଉଥିବା କିଛି
ଅନ୍ତରଂଗ ମୁହୂର୍ତ୍ତ ସବୁକୁ
ଓଟାରି ନେଇଛି ସତେ ବର୍ଷାଜଳ
ପ୍ରକୃତିର ପକେଟ୍‌ରୁ
ଶୋକାମୟ କରି ପରିବେଶ ॥

ଉତ୍କଟ, ବିଭତ୍ସ, ଅଶାନ୍ତ ସେ ଦୃଶ୍ୟ
ମାତ୍ରାଧିକ ବର୍ଷା ନଦୀ ଦେହେ
ଆଣେ ବନ୍ୟାର ପ୍ଲାବନ ।
ସବୁ ନଦୀ ପ୍ରବେଶନ୍ତି
ସାଗରର ଅତଳ ଗର୍ଭରେ
ହେଲେ ଅଶାନ୍ତ ସାଗର
ବକ୍ଷରେ କାହିଁ କେବେ
ଦେଖାନାହିଁ ବନ୍ୟାର
ତିଳେମାତ୍ର ଚିନ୍‌ହ
ଏ କେଉଁ ବିଧିର ବିଧାନ !

ବଢ଼ି ଛାଡ଼ିଗଲେ
ପାପ ଛାଡ଼ିଯାଏ
ଧୋଇ ହୋଇଯାଏ
ନଦୀର ଶ୍ରୀଅଂଗ ।
କଦର୍ଯ୍ୟ କଦାକାର ରୂପ
ତା'ର ଅପସରିଯାଏ
କେଡ଼େ ବେଗି ହୋଇଯାଏ
ଅତି ଅନ୍ତରଂଗ ॥ ❑❑

# ଚିର ଇପ୍‌ସିତ

ସତକୁ ସାମ୍ନା କରିବାର
ସତ୍‌ସାହସ ନେଇ ମୁଁ ବଞ୍ଚିଛି ।
ମିଛର ମୃତଦେହ ପରେ
ବିଜୟର ନୃତ୍ୟ ମୁଁ ରଚିଛି ।
ଶାନ୍ତିର ସୁନ୍ଦର ସହରେ
ଗଢ଼ିଛି ମୁଁ ସ୍ୱପ୍ନର ନନ୍ଦନକାନନ ।
ପରିଣତ ବୟସକୁ ବୁଲାଇ ନେଇଛି
ମୁଁ ପୁରୀ, ବୃନ୍ଦାବନ ।।

ତାଂକ ରୂପ ଦରଶନେ
ଆଖିରୁ ନିଗିଡ଼ିଯାଏ ରାଶିରାଶି ପାପ
ତାଂକର ଅଦୃଶ୍ୟ ଇଙ୍ଗିତେ
ଘଟିଯାଏ ଘଟଣା ଅମାପ
ସୁଖଦୁଃଖ ଲାଭକ୍ଷତି ଜୟ ପରାଜୟ
ସବୁଥିରେ ସମବୁଦ୍ଧି ଭାବବିନିମୟ
ପୁରୁଷ ଓ ପ୍ରକୃତିର ଅପୂର୍ବ ନାଟକ ।
ମୋତେ ଦେଖାଇ ଦେଉଛି ଖାଲି
ମୃତ୍ୟୁକୁ ଫାଟକ ।।

ଗୋଟିଏ ରୂପରେ ସିଏ
ଦିଶନ୍ତି ଅନେକ
ସତ୍ୟ, ଧର୍ମ, ନ୍ୟାୟ, କ୍ଷମା
ମୁକ୍ତିର ପ୍ରତୀକ
ସିଏ ରାମ ସିଏ କୃଷ୍ଣ ସିଏ ନାରାୟଣ
ସିଏ ବୁଦ୍ଧ ସିଏ ଯୀଶୁ ଅନାଦି କାରଣ
ବଜ୍ରପରି କଠିନ ସେ
ଫୁଲଠୁ କୋମଳ
ଭକ୍ତର ଭାବରେ ବନ୍ଧା
ଭକ୍ତିରେ ପାଗଳ
ସହସ୍ର ସୂର୍ଯ୍ୟର ତେଜ
ତାଂକ ପାଖେ ଫିକା ଫିକା ଦିଶେ ।
ଅଣଚାଶ ମରୁତ ବି ଥମିଯାଏ
ତାଂକରି ନିର୍ଦ୍ଦେଶେ ।।

ଅକ୍ଷୟ ଅବ୍ୟକ୍ତ ପୁଣି
ନିତ୍ୟ ଓ ନୂତନ
ନିରାକାର ପରଂବ୍ରହ୍ମ,
ଚିର ସନାତନ ।
ଦୀନବଂଧୁ କୃପାସିନ୍ଧୁ ଆରତ ନାଶନ
ଦୟାମୟ ଅନ୍ତର୍ଯ୍ୟାମୀ ହେ ମାନଭଞ୍ଜନ
ସକଳ ଜୀବଙ୍କର ଆତ୍ମା
ଆଦି ମଧ୍ୟ ଅନ୍ତ
ସବୁଥିରେ ଥାଇ ସେ ନଥାନ୍ତି
ବୋଲାନ୍ତି ଅନାଦି ଅନନ୍ତ

ଅକ୍ଷରରେ 'ଅ'କାର ସିଏ
ଶବ୍ଦରେ 'ଓଁ' କାର ।
ରୁଦ୍ରରେ ଶଙ୍କର ନାମ
ଧନରେ ବୋଲାନ୍ତି କୁବେର ।।

ମନରୁ ଘୁଞ୍ଚିଯାଏ ଦୁଃଖ ସବୁ
ତାଂକରି ପରଶେ
ଆକାଶ ବି ନଇଁ ଆସେ
ପୃଥିବୀର ପାଶେ
ଜନ୍ମମୃତ୍ୟୁ ଜରାବ୍ୟାଧି କବଳିତ ଦେହ
କାମକ୍ରୋଧ ଲୋଭ ମୋହ ହୁଅନ୍ତି ବିଲୟ
ଚିର ଇପ୍ସିତ ବାଞ୍ଛିତ
ସେ ମୋହନ ମୂରତି ।
ଚରଣ ଯୁଗଳେ ତାଂକ
ଢାଳେ ଭକ୍ତି ପ୍ରଣତି ।। ❑❑

# ଦୁଃଖ ତ ଆସିବ ବେଳେବେଳେ

ଦୁଃଖ ତ ଆସିବ ବେଳେବେଳେ
ଫୁଲଟି ଖସିପଡ଼ିବ ଡେମ୍ଫରୁ
କାନ୍ଥଘଣ୍ଟାରୁ ଟିକ୍ ଟିକ୍ ଶବ୍ଦ
ବି ନିରବ ହୋଇଯିବ ଦୁଃଖରେ
ସମ୍ଭାବନାକୁ ନେଇ ବଂଚିବାକୁ ହେବ
ସାତତାଳ ପାଣି ଭିତରୁ ଫଗୁଆଟି
ଉପରକୁ ଉଠିବ ଓ ଖୋଲିଯିବ ଆପଣାଛାଏଁ
ଓଠ ଅଠା ଅଠା ଲାଗିବ
ଉତ୍ତର ଦେଇ ଦେଇ ।
ଘରିକଡ଼ର ପୃଥିବୀ ଛୋଟ ହୋଇଯିବ
ଶୂନ୍ୟର ଦେହରେ ଘପିହୋଇ ।।

ସାନ୍ତ୍ୱନାର ସହର ଚଳଚଞ୍ଚଳ
ହୋଇ ଉଠିବ ଧୀରେ ଧୀରେ
ଛାତି ତଳର ନିଆଁ ପୋଡ଼ି ଜାଳିଦେବ
ସ୍ୱାଭିମାନକୁ ତିଳ ତିଳ କରି
ଉପାୟମାନ ନିରୁପାୟ ହୋଇ
ବୁଲୁବୁଲୁ ବାଟବଣା ହେବେ ।

ଅନ୍ଧାରରେ ହଜିଯାଇଥିବା ସୂର୍ଯ୍ୟକୁ
ଆଲୁଅର ଠିକଣା ବତାଇ ଦେବେ ।।

ଦୁଃଖ ତ ଆସିବ ବେଳେବେଳେ
ଅଜାଣତରେ କେତେବେଳେ
ସୁଖର ବାହାନାରେ ଠିଆକରେଇ ଦେବ
ବାସ୍ତବତାର ରାସ୍ତାରେ
ପରଖୁଥିବ ଧୈର୍ଯ୍ୟ ଓ ସାହସ ।
ବଖାଣୁଥିବ ବିଗତ ଦିନର ଗୁପ୍ତ ଇତିହାସ ।।

ଦୁଃଖ ତ ଆସିବ ବେଳେବେଳେ
ଶୁଖିଲା କାଠଖଣ୍ଡେ ପରି
ବୁଡ଼ି ଯାଉଥିବା ଲୋକ ପାଖକୁ ପହଁରି ପହଁରି
ଆଶାକୁ ବେସାହାରା କରି
ପାଇବ ନାହିଁ ଥଳକୂଳ ।
ବୁଡ଼ିବୁଡ଼ି ଖୋଜୁଥିବ ଅଥଳ ଜଳରେ
ହଜାଇ ଦେଇଥିବା ମଣିମୁକ୍ତାମାଳ ।।

ଅସରାଏ ଆଶ୍ରା ବର୍ଷିଯିବ ଅଜଣା ଆକାଶରୁ
ଠିକଣା ହଜେଇ ଦେଇଥିବା
ସଂକଳ୍ପ ମାନେ ଆଗେଇ ଆସିବେ
ସହାନୁଭୂତିର ହାତ ବଢ଼େଇ ।
ମାଟି, ପାଣି ଓ ପବନର ଗନ୍ଧ
ରାହା ଖୋଜିବେ ଦୁଃଖକୁ ଆହା
କରିଦେଇ ।।

ଦୁଃଖ ତ ଆସିବ ବେଳେବେଳେ
ଛାତିଚିରି ଅସମୟର
ସାଉଁଟି ନେବାକୁ ସମୟକୁ
କାଳର କୋଳରେ ।
ଦୁଃଖ ତ ଆସିବ ବେଳେବେଳେ
ଧୋଇଦେବାକୁ ସମୁଦ୍ରକୁ
ଲୁହର ଲୁଣିଆ ଜଳରେ ।।
ଦୁଃଖ ଆସିବଇଁ ଆସିବ
ନିଶ୍ଚୟ ଆସିବ । ❑❑

# ମୁଁ ପହଞ୍ଚିବା ପରେ

ମୁଁ ପହଞ୍ଚିବା ପରେ ଜାଣିଲି
ସେଠିକି ଆସିଛି ବୋଲି
ଆଗରୁ ଆସିଲାବେଳେ
କିଏ ନା କେହି ଅପେକ୍ଷା
କରିଥା'ନ୍ତି ମୋ ଆସିବା ବାଟକୁ ।
ସାଇତି ରଖିଥିବା ସ୍ୱପ୍ନ ସବୁ
ବାହାରି ଆସନ୍ତି ଅଣ୍ଟାଭିଡ଼ି
ବହୁଦିନ ପରେ ସାକାର ହେବାକୁ ।।

ଆସୁତ ନଥିଲି ସେଠାକୁ
ଭଲଥିଲା, ଏବେ ଆସି
ଗୋଟି ଗୋଟି ସବୁକଥା
ମନେ ପଡ଼ିଗଲା
କଥା କେଇପଦ ପାଇଁ
କେତେ ଡହଳ ବିକଳ
ଦିନରାତି ବି ଅଣ୍ଟୁ ନଥିଲା

ସମୟବି ବେଳେବେଳେ
ଅମାନିଆ ହୋଇ ଅସମୟକୁ
ଡାକି ଆଣୁଥିଲା ।।

ମୋ ଅଜାଣତରେ କେତେବେଳେ
ମୋ ଇଚ୍ଛାମାନଙ୍କର ମୃତ୍ୟୁ ହୋଇଥିଲା
କର, କପାଳ, କୋଷ୍ଠିକୁ ଆଶ୍ରାକରି
ଯାହା ବଞ୍ଚିଥିଲି । ନିଜର ଭାବୁଥିବା
ଦେହଟାରେ ନଜର ନ ଲଗାଇବାକୁ
କେତେ ବାରଣ କରିଥିଲି ତାକୁ
ହେଲେ ମୋ ଭଲପାଇବାକୁ
ହାତକଡ଼ି ପିନ୍ଧାଇ ଦେଇ ସେ ଚାଲିଗଲା ।
ଆଖି ପାଉନଥିବା ପୃଥିବୀଟା
ସତେ କେଡ଼େ ସାନ ଦେଖାଗଲା ।।

ଛାଏଁ ଛାଏଁ ବଂଦ ହୋଇଗଲା
ମୋ ଆସିବା ସେଠାକୁ ସିଏ
ଚାଲିଯିବାପରେ । ବାଟମାନେ
ବି ଭୁଲି ହୋଇଗଲେ ଆସ୍ତେ ଆସ୍ତେ
କପାଳରେ ଅଂକା ହୋଇଥିବା
ଭାଗ୍ୟରେଖାମାନେ ଗତିପଥ
ବଦଳାଇ ଦେଲେ ।
ନିଜସହ ବାଜି ଲଗେଇଥିବା
ଜିଦ୍‌ମାନେ ଜିତୁଜିତୁ ପାହି
ଛୁଇଁ ନ ପାରି ଶେଷରେ
ନିଜଠାରୁ ବି ହାରିଗଲେ ।।

ମୁଁ ପହଞ୍ଚିବା ପରେ ଦେଖିଲି
ସେ ଘରର କାନ୍ଥବାଡ଼ ସବୁ
ମୋତେ ଜଳଜଳ କରି ଚାହିଁଛନ୍ତି
ହଜିଲା ମୁହୂର୍ତ୍ତ ସବୁ ଓହ୍ଲାଇ
ଆସୁଛନ୍ତି ଘରେ ଟାଙ୍ଗା ହୋଇଥିବା
ବନ୍ଧେଇ ଫଟୋ ଭିତରୁ
ମୋତେ ହେଜେଇ ଦେଉଛନ୍ତି
ମୋ ସ୍ମୃତିରେ ସାଇତା
ଦୁଷ୍ଟ ଅନୁଭୂତି ମାନଂକୁ ।
ଓ ମୋ ସହ ସାଲିସ୍
କରିଥିବା ମୋ ଭଲ ପାଇବାକୁ ।। ❑❑

# କ୍ଷତ

ଆଉ ଟିକେ ପରେ ହୁଏତ
ଗାଡ଼ି ଛାଡ଼ିଦେବ ଓ ସିଏ
ଚାଲିଯିବେ । ଦରଶୁଖିଲା
କ୍ଷତରେ ମଲମ ଲଗାଇବେ ।
କ୍ଷତ ଶୁଖିଯିବ ସତ, ହେଲେ
ଦାଗଟିଏ ରହିଯିବ ସବୁଦିନ ପାଇଁ ।

ଅଳ୍ପ ସମୟ କଥାବାର୍ତ୍ତା ଭିତରେ
ସେ ମୋର ନିଜର ଲାଗୁଥିଲେ
ସ୍ୟାହି ସରିଆସୁଥିବା କଲମରେ
ଅକ୍ଷର ସବୁ ଅସ୍ପଷ୍ଟ ଦେଖାଗଲା ପରି
ତାଂକର ଅନୁଭୂତି ଗୁଡ଼ିକ
ମୋତେ ଫିକା ଦିଶୁଥିଲେ ।
ଚହଲୁଥିବା ପାଣିରେ ନିଜ ଛାଇ
ନିଜକୁ ମୁହଁ ମୋଡ଼ି ଦେଲା ପରି
ସିଏ ବେଳେବେଳେ କିଛି
ପଚାରିଲେ ଉତ୍ତର ନ ଦେଇ
ଚୁପ୍ ରହୁଥିଲେ ।

ପଚାରିବି କି ପଚାରିବିନି
ଭାବିଭାବି ଅନେକ କଥା
ପଚାରିଦେଲି । ତାଂକ
ଭଲ ପାଇବା ଠାରୁ ଭୁଲିଯିବା ପର୍ଯ୍ୟନ୍ତ
ସ୍ୱପ୍ନ ଦେଖାଠାରୁ ସ୍ନେହବିକା ପର୍ଯ୍ୟନ୍ତ ।

ଏମିତି ଏକ ଦିନରେ ସେ
ପହଞ୍ଚିଥିଲେ ସେଠାରେ
ଯେଉଁଠି ଥିଲା ଆଖି ପାଉନଥିବା
ଚତୁର୍ଦ୍ଦିଗ ଓ ବାଟ ଓଗାଳୁଥିବା
ସୂକ୍ଷ୍ମ ଅନୁଭବ କେତୋଟି ।
ତାଂକ ଧୈର୍ଯ୍ୟକୁ ପରଖିବା ପାଇଁ
ତାଂକୁ ଛିଡ଼ା ହେବାକୁ ପଡ଼ିଥିଲା
କେତେଥର ସମ୍ଭାବନାର କାଠଗଡ଼ା ଭିତରେ ।
ଅତୀତକୁ ଧିକ୍‌କାରିବାକୁ ବର୍ତ୍ତମାନର
ଆଇନାରେ ପରସ୍ତେ ବସିଯାଇଥିବା
ଧୂଳିକୁ ସଫାକରୁକରୁ
ତାଂକୁ ପ୍ରଶ୍ନ ପରେ ପ୍ରଶ୍ନର
ଉତ୍ତର ଦେବାକୁ ପଡୁଥିଲା
ନିର୍ଭୁଲ ଭାବରେ ।

ସେ'ତ କାହାକୁ ବାଧ୍ୟ କରୁ ନ ଥିଲେ
ତାଂକୁ ଭଲ ପାଇବାକୁ
ସେ ତ କାହାକୁ ଡାକି ନେଉ ନ ଥିଲେ
ତାଂକ ରହିବା ଯାଗାକୁ
ହେଲେ ସ୍ୱପ୍ନ ଦେଖୁ ଦେଖୁ
ସେ କାହିଁକି ସ୍ୱପ୍ନ ହୋଇଗଲେ ?

ଓ ସ୍ନେହ ବିକୁ ବିକୁ ସେ କାହିଁ
ମୁକ ହୋଇଗଲେ ?

ଆଉ ଟିକକ ପରେ ହୁଏତ
ସେ ସେଠାରେ ଆଉ ନ ଥିବେ
ନିଜେ ଅର୍ଜିଥିବା କ୍ଷତଟିକୁ
ସାଂଗରେ ନେଇ ସବୁଦିନ ପାଇଁ
ଏକୁଟିଆ ଚାଲି ଯାଉଥିବେ । ❑❑

# ଅମାନିଆ

ମୁଁ ମନାକଲେ କୋଉ ସିଏ
ଶୁଣିବ ? ମନକୁ ପବନ ପରି
ଯେଣେଇଚ୍ଛା ତେଣେ ପଠାଇବ
ସିଏ ତ ବୁଝିବ ନାହିଁ ପାହି
ଆସୁଥିବା ରାତି ପରି ମୁଁ କେମିତି
ଅପେକ୍ଷା କରିଛି ସକାଳକୁ
ସିଏ ତ ଜାଣିବ ନାହିଁ କିଏ ଜଣେ
ତା'ପାଇଁ ସୂର୍ଯ୍ୟ ସଂଗେ କଳିକରି
ବଳପୂର୍ବକ ଛଡ଼ାଇ ନେଇଛି ଆଲୁଅକୁ
ବୁଲିବୁଲି ଖାଲି ହାତରେ ଯେତେବେଳେ
ଘରକୁ ଫେରିବ, ପଚାରିଲେ କହିବ
ମୁଁ କ'ଣ କରିଥା'ନ୍ତି, ଯାହା ଯାହା ମୋର
ପାଇବାକୁ ଥିଲା ସିଏ ତ ମିଳିଲା ନାହିଁ
ଯାହା ସବୁ ପାଇଥିଲି ତା'କୁ
ଧରି ରଖିବା ବି ଅଣାୟତ୍ତ ହେଲା
ତେଣୁ ସେ ସବୁ ରହିଲା ନାହିଁ ।

ସାପସିଡ଼ି ଖେଳରେ ସାପ ମୁହଁରେ
ସବୁବେଳେ ଧରାଦେଇ ସେ ତଳକୁ ଖସିଛି

ଭସାମେଘ ଖଣ୍ଡେ ସିଏ, ମନଇଚ୍ଛା
ବର୍ଷି ନ ପାରି ଖାଲି ଗର୍ଜି ଚାଲିଛି ।
ହାତ ପାହାନ୍ତାରେ ଧରାଦେବାକୁ
ଆସିଥିବା ସୁଯୋଗକୁ ଧରି ପାରିନି
ଭାଗ୍ୟକୁ ନିନ୍ଦାକରି ଭଗବାନଙ୍କୁ
ଦାୟୀ ନକରି ରହି ପାରିନି ।

ସମ୍ଭାବନାକୁ ସାଥୀ କରି
ସିଏ ଆଶ୍ରା ଖୋଜିଛି ସଂପର୍କର
ସ୍ୱପ୍ନକୁ ସାରଥୀ କରି
ହେ ରଥ ଚଳାଇଛି ତାରୁଣ୍ୟର ।

ସିଏ କ'ଣ ଭାବିଛି କେଜାଣି
ମୋତେ ନ କହିଲେ ମୁଁ କ'ଣ
ଦିନେ ନା ଦିନେ ଜାଣିବିନି !
ସେତେବେଳକୁ ଭାଂଗି ପଡ଼ିଥିବ
ଆକାଶ, ଅବସ ହୋଇପଡ଼ିଥିବ
ମେଘ ଗର୍ଜି ଗର୍ଜି ଓ ସାପମାନେ
ଦୁର୍ବଳ କରିଦେଇଥିବେ ତାକୁ ଗିଳିଗିଳି
ସିଡ଼ିକୁ ବି ଲୁଚେଇ ଦେଇଥିବ କିଏ
ତା' ନଜର ଆଗରୁ
କାଳେ ଉଠିଯିବ ସିଏ ଉପରକୁ ।
ପ୍ରଶ୍ନପରେ ପ୍ରଶ୍ନର ଉତ୍ତର
ଦେବାକୁ ପଡ଼ିବ ତାକୁ
ତା'ର ବିବେକକୁ ଓ ତା'ର ଅହଂକାରକୁ । ❑❑

# ଅଶରୀରୀ

ଦିନେ ରାତି ଅଧରେ
ମୋ ହୃତ୍‌ପିଣ୍ଡ ଥରିବା ଆଗରୁ
ମୁଁ ଥରିଗଲି
ମୋ ନିଶ୍ୱାସ ଅଟକିଯିବା ଆଗରୁ
ମୁଁ ଅଟକିଗଲି
ବଂଦ ଘରର କୋଠରୀ ଭିତରେ
ତାକୁ ପଶିବାକୁ କେତେ ସମୟ
ଲାଗିବ ? ଋହିଁଲେ ସେ
ଧୂଳିକଣା ହୋଇ ବୁଲିବ ଚତୁର୍ଦ୍ଦିଗ ତ ।
ପୁଣି ଋହିଁଲେ ଗଢ଼ିଦେବ ପବନ ଉପରେ
ଏକ ସୁରମ୍ୟ ପ୍ରାସାଦ
ଯା' ଭିତରେ ଆତଯାତହେବେ
କୋଟି କୋଟି ଭୂତପ୍ରେତ ।।

ସିଏ ଗୋଟିଏ ପଲକରେ
ପାଲଟିଗଲା ଅପୂର୍ବ ସୁନ୍ଦରୀ
ଗଢ଼ିଦେଲା ନିମିଷକେ ମୋ ପାଇଁ
ସୁନ୍ଦର ଅଳକାପୁରୀ

ଆଂକିଦେଲା ମନରେ ମୋ
କାମନାର ଶତ ଇନ୍ଦ୍ରଧନୁ ।
ଓ ସଂପର୍କର ସେତୁବନ୍ଧଟିଏ ତିଆରିଲା
ମୁଁ ତା'କୁ ଭଲକରି ଜାଣିବା ଆଗରୁ ।।

ମୁଁ ତ ଜାଣି ପାରିଲିନି ସିଏ
ଏମିତି ଏକ ବେଶ ନେଇ ଆସିବ
ଘୋଡ଼ିହେଲାଟିଏ ଶୀତ ରାତିରେ
ମୁଁ ଘୋଡ଼େଇ ହୋଇ ଶୋଇଥିବି
ଆଉ ସିଏ ଆସି ମୋତେ ଉଠାଇବ ।
ମୋ ସାଂଗେ କରିବ କେତେ ଖୁସିଗପ
ଓ ମଧୁର ଆଳାପ ।
ପୁଣି ମୁଁ ଉଠିବା ଆଗରୁ କାଲେ
ତା'କୁ ନ ଖୋଜିବି, ସେଥିପାଇଁ
ସେ ଯାଗା ଛାଡ଼ି ସିଏ ପଳାଇବ ।।

ବିଶ୍ୱାସର ସିଡ଼ିଟିଏ ଥୋଇଦେବ
ଆଗରେ, ଯାହାକୁ ଚଢ଼ି ମୁଁ
ମୁଁ ବୁଲିବି ସାରା ଭୂମଣ୍ଡଳ
ନିଶ୍ୱାସ ମାରିବାକୁ ପଠାଇବ ମୁଠାଏ
ପବନକୁ, ଯାହାକୁ ଆଶ୍ରାକରି
ମୁଁ ଜିଇଁବି ଚିରକାଳ
ମୃତ୍ୟୁ ହେବା ଆଗରୁ ଛୁଇଁବି ମରଣକୁ ।
ଓ ଜନ୍ମ ହେବା ଆଗରୁ
ଚିହ୍ନିବି ଜୀବନକୁ ।। ❑❑

# ପାଗଳ

ମୋ ଘରିକଡ଼ ମୋ ସାଂଗେ
ଲଗେଇଛନ୍ତି କେମିତି ମୁଁ
ଅପେକ୍ଷା କରିବି ସେମାନଙ୍କୁ କାଳକାଳ ।
ମୋ ଦେହରୁ ମୁଁ ବାହାରି
କେମିତି ବୁଲିବି ପଦାରେ
ମୋତେ ସଭିଏଁ କହିବେ
ମୁଁ ଗୋଟେ ପାଗଳ ।।

ମୋର ଏମିତି ଏକ ପରିସ୍ଥିତି
ପାଇଁ କାହାକୁ ମୁଁ ଦାୟୀ କରିବି ?
ମୋ ପାଇଁ ହସୁଥିବା ମୋ ଦୁର୍ବଳତାକୁ ?
କି ବହୁ ଖାଲଢିପ ଥିବା ରାସ୍ତାରେ
ଝୁଣ୍ଟି ପଡୁଥିବା ଅନ୍ୟମାନଙ୍କର
ଅନୁକମ୍ପାମାନଙ୍କୁ, ମୋତେ ବଧେଇ
ଢଣଉଥିବା ଅନ୍ୟମନସ୍କତାକୁ
କି ମୋ ସହିତ ଅଦଉତି
କରୁଥିବା ମୋ ନିଃସହାୟତାକୁ ?

ଏ ସବୁ ପ୍ରଶ୍ନ ପଚାରି ମୁଁ
ନିଜକୁ କେତେଥର ଦୋଷିକରି

ପଠାଇଦେଇଛି ଅହଂକାରର କାରାଗାର ।
ଦି' ଆଖିରୁ ନିଗିଡ଼ି ପଡୁଥିବା ଲୁହକୁ
ଯେତେ ପଚାରିଛି
ସିଏ ମୋତେ ଦେଇନି ଉତ୍ତର ।।

ଅନ୍ଧାରକୁ ଆଲୁଅ ଟିକେ
ଦେବ କ'ଣ ମୋ ଭିତରେ ଜଳୁଥିବା
ଦୀପଟି କାହିଁ ଏଡ଼େ ବେଗେ ଲିଭିଆସୁଛି
ଭଲ ଶୁଭୁନଥିବା ଚିତ୍କାରକୁ
ଶୁଣିବ କ'ଣ ଆଡ଼େଇ ହୋଇ
ମୋ ନିରବତା କୋଳାହଳ
ଆଡ଼କୁ ମାଡ଼ି ଚାଲିଛି ।
ମୋତେ ଦିଶୁଛି ଜଳଜଳ
ହୋଇ ମୋର ନିଶ୍ଚଳ ବ୍ରହ୍ମାଣ୍ଡ
ଓ ତା' ଭିତରେ ଆତଯାତ
ମାଳମାଳ ଅନ୍ତରାତ୍ମାମାନଙ୍କର
ଆର୍ତ୍ତନାଦ । ନଟେଇରୁ
ଛିଡ଼ିଯାଇଥିବା ଗୁଡ଼ି
ପବନରେ ଧକ୍କା ଖାଇ
ବେସାହାରା ହୋଇ ୟାଡ଼େ ସାଡ଼େ
ବୁଲିବା ପରି ମୁଁ
ଘୁରି ବୁଲୁଛି ମୋତେ
ଅପେକ୍ଷା କରିଥିବା ମୋ
ଆତ୍ମ ସମୀକ୍ଷାର ବିସ୍ତୃତ ଇଲାକା ।
ଓ ମୋ ଭିତରେ ବାଘଭାଲୁ
ରହୁଥିବା ସୁଦୀର୍ଘ ନୀଳ ଉପତ୍ୟକା ।।

ମୋର ଏ ପାଗଳାମି କେବେଠାରୁ ?
ଠିକ୍ ମୋର ମନେ ପଡୁନାହିଁ
କିଏ କ'ଣ ପଗରିଲେ ଡାହାଣଗୋଡ଼
ବୁଢ଼ାଆଙ୍ଗୁଠିରେ ବାଲିରେ ଗାରକାଟି
ଅନ୍ୟମନସ୍କ ହୋଇ
ଉତ୍ତର ଦେବା ଦିନଠାରୁ ବୋଧହୁଏ
ଜଦୁଉଦିଆ ଦି'ପହରେ କମ୍ବଳଟିଏ
ଘୋଡ଼ିହୋଇ ଚାଲିବା ଦିନଠାରୁ
କି ହାଡ଼ଭାଂଗା ଶୀତ ରାତିରେ ଫୁଙ୍ଗୁଳା
ହୋଇ ରାସ୍ତାରେ ବୁଲିବା ପରଠାରୁ
ମୋର ଠିକ୍ ମନେ ପଡୁନାହିଁ
ଖାଲି ମନେଅଛି ସ୍କୁଲରେ ଦିନେ
ଦିଦିଙ୍କୁ ଖଟେଇ ହୋଇ ଶୂନ୍ୟକୁ ଚାହିଁ
ଖୁବ୍ ହସିଥିଲି । ସାଂଗମାନେ ଟାହିଟାପରା
କରୁଥିଲେ ଓ ମୁଁ ସବୁ ନିରବରେ
ସହି ନେଇଥିଲି ।।

ପିଲାଦିନେ ବୋଉ କହୁଥିଲା
ଏଡୁଟିଏ ହେଲାଣି
ପିଲାଳିଆମି ଯାଇନି –
ବୋଉ ତ ଆଉ ନାହିଁ
ଥିଲେ ଦେଖୁଥା'ନ୍ତା
ତା' ପିଲାଳିଆମିଟା ବଢ଼ ହୋଇ
କେମିତି ପାଗଳାମି ହୋଇଛି ।
ପାଗଳ ପାଗଳ ବୋଲି
ଚାରିଆଡ଼େ ହୁରି ପଡ଼ିଅଛି ।। ❑❑

# କ୍ଷମତା

ମୁଁ ଯେତେବେଳେ ଯାହା ଚାହୁଁଥିଲି
କରିପାରୁଥିଲି । ପବନ ସାଂଗରେ
କଳିକରି ଝଡ଼କୁ ରୋକି ପାରୁଥିଲି
ଶବ୍ଦମାନଙ୍କୁ ନିଶବ୍ଦରେ ନେଇ
କେଉଁ ଏକ ଅଭିଧାନ ଭିତରେ
ଲୁଚାଇ ରଖିଦେଇଥିଲି ଯେ ଅନ୍ୟକୁ
ଖୋଜି ଖୋଜି ନୟାନ୍ତ ହେବାକୁ ପଡୁଥିଲା
ଏଥିପାଇଁ କେତେ ଗାଳିମନ୍ଦ ଖାଇଥିଲି
ମୋର ଏବେ ବି ମନେ ଅଛି ।
ପୁଣି ଯେତେ ସବୁ ବାହାବା ପାଇଥିଲି
ତାକୁ ସବୁ ଭୁଲି ଯାଇଅଛି ।।

ସରି ଆସୁଥିବା ଦିନକୁ ଅପେକ୍ଷା
କରୁଥିଲି ସଂଜ ଆସିବାଯାଏ
ଫୁଟି ଯାଇଥିବା ଫୁଲମାନଙ୍କୁ
ନତୋଳି ରଖି ଦେଉଥିଲି
ଗଛରେ ସେମାନେ ଝାଉଁଳି ଯିବାଯାଏ
ଅପେକ୍ଷାର ଅନ୍ତକରି

ଦିନ ସରି ଆସିଥିଲା ।
ଓ ମହକକୁ ସାଥୀରେ ଧରି
ଫୁଲ ମଉଳି ଯାଇଥିଲା ।।

ହାତକୁ ଆସୁଥିବା ସୁଯୋଗସବୁ
ବାଟଭାଙ୍ଗି ଚାଲିଯାଉଥିଲେ
ମୋତେ ଏକୁଟିଆ କରିଦେଇ
ଆଖିର ପଲକ ବି ପଡୁ ନଥିଲା
ସାରା ରାତି ଉଜାଗର ରହି
ଶୂନ୍ୟକୁ ଅନାଇ କରୁଥିଲି
ମୋ ପାପ ପୂଣ୍ୟର ହିସାବ ନିକାଶ ।
ଅନୁଶୋଚନାର ରତ୍ନବେଦୀ ପରେ
ଖୋଜୁଥିଲି ବଞ୍ଚିବାର ବଳକା ଆୟୁଷ ।।

ଭାରି ଭାରି ଲାଗୁଥିଲା ପୃଥିବୀ
ଛୋଟ ପକ୍ଷୀଟିଏ ପରି ମନ
ଉଡ଼ିବୁଲୁଥିଲା ଏଡାଳରୁ ସେଡାଳ
କ୍ଷମତାର ଡୋରି ଛିଡ଼ିଗଲା ପରେ
ସିଏ ହେଉଥିଲା ଖାଲି ଡହଳ ବିକଳ
ମନଟା ଅମାନିଆ ହୋଇ
ମୋତେ ବେଖାତିର କରୁଥିଲା ।
ଆଙ୍ଗୁଠି ଅଗରେ ଦିନ ଗଣୁଗଣୁ
ସଂଖ୍ୟା ସବୁ ସରି ଯାଉଥିଲା ।।

ଏମିତି ଗୋଟେ ଜୀବନକୁ ନେଇ
ଦିନେ ଜିଇଁବାକୁ ପଡ଼ିବ ବୋଲି

ମୁଁ ଯଦି ଜାଣି ଥା'ନ୍ତି, ଆଗରୁ
ହୁସିଆର ହୋଇ ଦୂରେଇ ରଖିଥା'ନ୍ତି
କ୍ଷମତାକୁ ସବୁଦିନ ପାଇଁ ।
ଓ କ୍ଷମତା ପଛରେ ଦଉଡ଼ି ନଥାନ୍ତି
ହାଲିଆ ହେଲାପରି ପିଲାଦିନେ
ନିଜ ଛାଇକୁ ନିଜେ ଗୋଡ଼େଇ ଗୋଡ଼େଇ ।।

ଆଜ୍ଞାକୁ ଅବଜ୍ଞା କରିବାର
ଯୁ' ଏବେ ନାହିଁ ମୋର
କର୍ମକୁ ଆଦରି ଭାଗ୍ୟ
କରେ ହାହାକାର
କେମିତି କେମିତି ଦିନ ସରିଗଲେ ଯାଏ ।
ପ୍ରକୃତିର ମାୟାଜାଲେ ଛନ୍ଦିହୋଇ
ଏବେ ଖାଲି ଛଟପଟ ହୁଏ ।। ❑❑

## ତାଂକ ବିଷୟରେ ଭାବୁଭାବୁ

ତାଂକ ବିଷୟରେ ଭାବୁଭାବୁ
ସେ ଆସିଗଲେ । କେତେ କୋହ ଓ
ମୋହରେ ବଂଧା ପଡ଼ିଥିବା ମୋ
ବାକୀଥିବା ଆୟୁଷକୁ ପଋରି ବୁଝିଲେ ।
ସତକୁ ସାମ୍ନା କରିବାର ସାହସ
ମୋ ଦେହରେ ଭରିଦେଲେ
ଭାଂଗି ଯାଇଥିବା ସଂପର୍କର କାଚ ବୋତଲକୁ
କେଇଟୋପା ଲୁହରେ ସେ ଯୋଡ଼ି ଦେଲେ ।

କାନ୍ଥରେ ଟଂଗାହୋଇଥିବା ଆରିସିରେ ପରସ୍ତେ
ଧୂଳିକୁ ଆଂଗୁଠି ଟିପରେ ସଫାକରୁକରୁ
ଅଜାଣତରେ ତାଂକ ନାଁ ଲେଖିଦେଉଥିଲି
ହଜି ଯାଇଥିବା ଅତୀତର ପ୍ରତିଟି
ମୁହୂର୍ତ୍ତକୁ ତାଂକ ସାମ୍ନାରେ ବସି
ହେଜି ହେଉଥିଲି ।

ସେ ଋହିଁ ଦେଲେ ଜଳିଯାଉଥିଲା
ମୋ ଭିତରର ଅଗ୍ନାଅଗ୍ନି ବନସ୍ତ

ସେ ଚୁପ୍ ରହିଲେ ଅଭିମାନରେ
ଝାଉଁଳି ପଡୁଥିଲେ ତାଂକ ସହ
ସହବାସର ପ୍ରତିଟି ମୁହୂର୍ତ୍ତ ।

କାଲିର ସତ ଆଜିକୁ ମିଛ ଲାଗୁଥିଲା
କାଲିର ସିଂହାସନ ଆଜିକୁ
ଶୂନ୍ୟ ଦିଶୁଥିଲା । କିବା କଥାରେ
ଘର ଛାଡ଼ିଥିଲେ - ଭାବିଲେ
ଧୂଳି ଓ ଧୂଆଁର ଆସର
ବିବର୍ଣ୍ଣ ଦିଶୁଚି ମୋ ଘରିକଡ଼
ପଞ୍ଜୁରିରୁ ଉଡ଼ିଯାଇଛି ପୋଷାଶୁଆ
ମୁକ୍ତି ପାଇଁ ଖୋଲିଦେଇଛି
ଶକ୍ତିର ଶିକୁଳି ।
ଚେନାଏ ଚେତନାର ମସୃଣ ଦେହରେ
ଝଲସୁଛି ରଂଗ ଭଳିଭଳି ।

ଢରିଲଗା ଜମ୍ବୁରାରେ ଝାଲର
କାଟିଲାବେଳେ ଆଗକୁ ଆସିଯାଏ
ଦୁର୍ଗାପୂଜା ମେଢ଼ର ରୋଷଣୀ
ନଜର ଲାଗିବା ଭୟରେ ନିଜକୁ
ଲୁଚେଏ ବାରଂବାର କାହିଁକି କେଜାଣି ।
ବୟସ ବି ହସିଦିଏ ମୋର
ଏ ଲୁଚେଇଛପା ପ୍ରେମିକା ହେବାକୁ ଦେଖି
ତାଂକ ଆସିବା ଉତ୍ତାରୁ
ବହୁଦିନରୁ ନଇଁ ପଡ଼ିଥିବା କ୍ଲାନ୍ତ

ଆଳାପ ସବୁବି
ହଠାତ୍ ଘଲନ୍ତି ଅଣ୍ଟାକୁ ସଳଖି ।

ସେ ହସି ହସି ଆଦରି ନେଉଥିଲେ
ତାଂକ ଓ ମୋ ଭିତରେ ଥିବା ତଫାତ୍‌କୁ
ମୋ ଅମଣିଷ ପଣିଆକୁ ମୁଁ ନିଜେ
ତାଂକଠାରୁ ଛଡ଼େଇ ଆଣିଲା ବେଳେ
ସେ କିଛି ନ ଜାଣିଲା ଭଳି ଚୁପ୍ ରହିଥିଲେ ।
ମୋ ଭିତରେ ବହୁଦିନରୁ ଜମାଟ ବାଂଧିଥିବା
ପ୍ରଶ୍ନସବୁ ସେମାନଂକ ଉତ୍ତର
ଆପେ ଆପେ ପାଇସାରିଥିଲେ । ❑❑

# ଜିଦ୍

ସମୁଦ୍ରରେ ଲହଡ଼ି ଗଣୁଥିବା
ଲୋକଟି କଥାରେ ପଡ଼ି 'ହଁ' ମାରିଦେଲି ସିନା
ହେଲେ ସେ ହଁ ଭିତରେ ଏତେ
ନାହିଁ ନାହିଁର ପୃଥିବୀ ଥିଲେ ଯେ
ଦିନ କେଇଟା ଭିତରେ ସବୁ
ପଦାକୁ ବାହାରି ଆସିଲେ ।
ଲୁଚେଇ ରଖିଥିବା ସଂକଳ୍ପଗୁଡ଼ିକୁ
ଦୁର୍ଯ୍ୟୋଧନର ପଶାପାଲିରେ
କେଡ଼େ କାଇଦାରେ ଗଡ଼େଇ ଦେଲେ ।।

ଜାଣିଥିଲି ଯଦିଓ ଏମିତି
ଏକ ପରିସ୍ଥିତି ଦିନେ ନା ଦିନେ ଆସିବ
ନ ଚାହିଁଲେ ବି ମୋ ଇଚ୍ଛା ବିରୁଦ୍ଧରେ
ମୋତେ ବିବସ୍ତ୍ର କରିବ
ମୋର ଅନ୍ୟ କିଛି ଉପାୟ ନ ଥିଲା ।
ସମୟକୁ ସମର୍ପଣର ଶିକୁଳିରେ
ବଂଦିକରି ନିଜକୁ ନିଜେ ଆହା କରିବାର

ଅଭ୍ୟାସକୁ ଆଦରି ନେବାର ଅଭିନୟ
କେବଳ ମୋତେ ଆଶ୍ରା ଦେଇଥିଲା ।।

ସରଳତାର ସୁଯୋଗରେ ସେ ମୋତେ
କାବୁ କରିବାକୁ ଚାହିଁଲେ ମୁଁ
ଆଖି ବୁଜି ଦେଉଥିଲି ।
ଅଜାଣତରେ ଗଡ଼ି ଆସୁଥିବା
କେଇଟୋପା ଲୁହକୁ ଅନ୍ୟମନସ୍କତାର
ଆଇନାରେ ପୋଛି ଦେଉଥିଲି ।।

ସଞ୍ଚିଥିବା ସମସ୍ତ ଶକ୍ତିକୁ ସେଦିନ
ଅତୀତରୁ ବର୍ତ୍ତମାନ ପର୍ଯ୍ୟନ୍ତ
ଲଂବି ଯାଇଥିବା ଲଂବା ରାସ୍ତାକଡ଼କୁ
ସେ ଫିଙ୍ଗି ଦେଇଥିଲା ।
ଶକ୍ତି ସହିତ ସାମର୍ଥ୍ୟର ଲଢ଼େଇରେ
କେତେବେଳେ ଖାଲି ହାରୁଥିଲା ତ
ପୁଣି କେତେବେଳେ
ହାରୁହାରୁ ଜିତିଯାଉଥିଲା ।।

କେଉଁଠି ଥିଲା କେଜାଣି
ସେଦିନ ସେ ଝଡ଼ବେଗରେ ପଶିଆସିଲା
କିଛି ପଚାରିବା ଆଗରୁ
ସମସ୍ତ ସମ୍ଭାବନାକୁ ତା'ର
ଆବେଗଭରା କଣ୍ଠରେ ଏକା
ନିଶ୍ୱାସକେ କହିଗଲା
ମୋତେ ଲାଗିଲା ମୁଁ ଯେମିତି

ତା' ଦୟାରେ ବଞ୍ଚିଛି ।
ସେ ଧରିଥିବା ଧର୍ମର ତରାଜୁରେ
ମୁଁ କରିଥିବା ଅଧର୍ମକୁ
ନିତି ମାପୁଅଛି ॥

ମୋ ନିରବତାରେ ସେ ଖାଲି
ମୋର ସମ୍ମତି ଖୋଜୁଥିଲା ।
ମୋ ଅମାନିଆ ହେବାଟା
ତା' ଜିଦ୍ ପାଖରେ ଯେମିତି
ହାର୍ ମାନିଗଲା ॥ ❑❑

# କଲିକତା

ଘରିଆଡ଼େ କୋଳାହଳ
ଆଉ ଖାଲି ଅସ୍ଥିରତା
ତା'ଭିତରେ ତୋତେ ଦେଖିଲି
ଆଜିଲୋ ମୁଁ- କଲିକତା
ଶୃଙ୍ଖଳା ସିଝିଲା ମୁହଁ ତୋ
ଝାଉଁଳି ପଡ଼ିଛି
ଦିଶୁଚି ବିବର୍ଣ୍ଣ ଏ
ନିର୍ମମ ଝାଞ୍ଜିରେ ।
ଖୋଜିଲା ଆଖିରେ ମୋର
ତୋର ସେ ସତେଜ ଦେହ
ଆଜି କାହିଁ ଯାଇଛି ହଜିରେ ॥

ଧାଡ଼ି ଧାଡ଼ି ଗାଡ଼ି
ଆଉ ମଣିଷଙ୍କ ସୁଅ
ରାସ୍ତାକଡ଼େ ଠାଏ ଠାଏ
ଅଳିଆ ଅସନା ଦେହ
କୁଆଙ୍କର ରାଉରାଉ
କାମୁଡ଼ା କୁକୁରଙ୍କ ଦାଉ ।

ସତରେ ଲୋ କଲିକତା
ସହି ହେଉନାହିଁ ଆଉ ।

ଆକାଶ ବୋଲିଛି ମୁହେଁ
ଧୂଳି ଆଉ ଧୂଆଁ
ପିନ୍ଧିଛି ପାଟଶାଢ଼ିଟିଏ
ହେଲେ ଦିଶୁଚି ମସିଆ
ନିରେଖି ରହିଁଲେ ତାକୁ
ଲୁଚେଉଛି ମୁହଁ ।
ଠାଏ ଠାଏ ଅନ୍ଧାରୁଆ
ପୁଣି ଠାଏ ଠାଏ
ଦିଶୁଚି ଆଲୁଅ ।।

ରାସ୍ତାଗୁଡ଼ା ଲଂବିଯାଇଛନ୍ତି
ମନଇଛା କିଏ କେଉଁଆଡ଼େ
ଲାଗୁଚି ଡାକେବାଟ ପରି
ହେଲେ ତୋତେ ଖୋଜିବାକୁ ପଡ଼େ
ଯାକୁ ତାକୁ ପଋରି ପଋରି
ବାଟରେ ଭେଟୁନି କାହିଁ
କେହି ଚିନ୍‌ହା ମୁହଁ ।
ଜୀବନ ମଣୁଛି ଖାଲି
ବିସ୍ମୟ ବିସ୍ମୟ ।।

ପୁରୁଣା ଦେହରେ ତୋର
ମାଖିଅଛୁ ବହଳେ ଅନ୍ଧାର
ନୂଆ ଦେହେ ଝଲସୁଛି

ଅସରନ୍ତି ଆଲୋକର ଘର
କେଉଁଠି ଲାଗୁଛୁ ନୂଆ
ପୁଣି କେଉଁଠି ପୁରୁଣା ।
କେଉଁଠି ଦେଉଛୁ
ଧରା ଆପେ ଆପେ
ପୁଣି କେଉଁଠି ଯାଉଛୁ ଲୁଚି
ଖୋଜି ଖୋଜି ପାଏନି ଠିକଣା ॥ ❑❑

# ସହିଦ୍

ନିଜପାଇଁ ନିଜେ ବଂଚିବାର
ମାନେ ନୁହେଁ ଜୀବନ ।
ଜଂଜାଳମାନଙ୍କୁ ଜଳାଞ୍ଜଳି ଦେଇ
ଆପଣାକୁ ପରକରିବାରେ
ସୁଖ ଅର୍ଜିବା ଖାଲି ମରଣ ସମାନ ।

ସୁଖର ନାଲିଘୋଡ଼ାଟିର ଟାପୁସହିତ
ତାଳ ମିଳାଇ ଚାଲୁଥିବା ସୈନିକ
ଜଣକ ପରାଜୟ କ'ଣ ଜାଣିନାହିଁ
ଦୁଃଖରେ ଭାଂଗିପଡୁଥିବା ସଦ୍ୟ ବିଧବା
ଯୁବତୀ ଜଣକ ଚଳଚଂଚଳ ଚାହାଣୀରେ ତାର
ଭରିଦେଇଛି ସମ୍ଭାବନାତକ କାହାପାଇଁ
ସିଏ ମରିଛି କି ତାକୁ ମାରିଦିଆଯାଇଛି
ଏ ପର୍ଯ୍ୟନ୍ତ ଜଣାପଡ଼ିନାହିଁ ।
ଲିଭି ଆସୁଥିବା ଦୀପଟି ଜୋର୍‌ରେ ଜଳିଲାଭଳି
କାନିପଡେଇ ମୁଣ୍ଡ ଫଟେଇ କାନ୍ଦିବାର
ଶବ୍ଦ ଚାରି ଆଡ଼କୁ ଦେଇଛି ଖେଳେଇ ।।

ଦେହକୁ ଦେଖିଲେ ଲାଗୁନି ତା'ର
ଜୀବ ଛାଡ଼ିଗଲା ପରି
ଦେଶ ପାଇଁ ଜୀବନ ଦେବାରେ କି ଆନନ୍ଦ
ଗୁଳି ଗୋଳା ବାରୁଦର ଗଂଧ
ଦେହରେ ତା' ରହିଅଛି ଭରି
ଦି'ଫାଳ କରି ଚିରିଦେଲେ ହୃଦୟକୁ ତା'ର
ଭାରତର ମାନଚିତ୍ର ମନରେ ଆଙ୍କି ହୋଇଯାଏ ।
କଥାକୁହା କଣ୍ଠେଇଟେ ଭାଷା ଖୋଜି ଖୋଜି
ସତେଯେମିତି ମୂକ ହୋଇଯାଏ ।।

ଆଖିରୁ ନିଗିଡ଼ି ଆସିଥିବା ଲୁହର ଗାରରେ
ଲେଖିହୋଇଯାଏ ତା'ର ଆତ୍ମଲିପି
ଇତିହାସ ପୃଷ୍ଠା ପାଲଟିଯାଏ
ତା' ହାତ ଅଙ୍କା ଛବିଟିଏ ।
ଓ ତା' ଭିତରେ ସିଏ ସବୁଦିନ ପାଇଁ ରହିଯାଏ ।।

କାହିଁ କେତେଦୂର ଆଖି ପାଏନି ଅନେଇଲେ
କେଉଁଠି ଥିଲା ପୁଣି କୁଆଡ଼େ
ଆସିଚି ଏ ନିର୍ଜିବ ଦେହରେ
ଦେହଟିକୁ ସଯତ୍ନେ ଘୋଡ଼େଇ
କିଏ ରଖି ଦେଇଛି କଫିନ୍ ଭିତରେ
ଆକାଶରୁ ଖରା ଓହ୍ଲାଇ ଆସି
କେତେବେଳେ ତାତି ଟିକକ
ଛାଡ଼ିଦେଲାଣି ପୃଥିବୀରେ ।
ଛାଇନେଉଟା ବେଳ ଭିତରେ ଭିତରେ

ଗୁମୁରି ଗୁମୁରି କାନ୍ଦୁଛି
କେବଳ ତା' ଉଦ୍ଦେଶ୍ୟରେ ।।

ନିରବ ହୋଇଯାଇଛି ଘରିଆଡ଼
କିଛିକ୍ଷଣ ପାଇଁ ଓ
ତାପରେ ତୋପ ସଲାମିରେ ଉଚ୍ଛୁଳି ପଡୁଛି
ବିରାଟ ପଟୁଆର
ଶବାଧାର ଘରିକଡ଼େ ଆଖି ନ ପାଇଲା ପର୍ଯ୍ୟନ୍ତ
ଭିଡ଼ ଭିତରେ ନାଁ ସାଂଗରେ
ଯୋଡ଼ିହୋଇଛି ଦି'ପଦ "ଅମର ରହେ"

ସାର୍ଥକ ହୋଇଛି ମୃତ୍ୟୁ ତା'ର
ସହିଦ୍ ବେଶରେ ଯାଉଯାଉ ।
ଦରଆଉଜା ଝର୍କା ଫାଙ୍କରେ
କାନ୍ଦୁଛି କିଏ ସଦ୍ୟବିଧବା ହେଉହେଉ ।। ❑❑

# ଝର୍କା

ଝର୍କା ଖୋଲିଦେଲେ ମୋଞ୍ଚାଏ
ଥଣ୍ଡା ପବନ ଚାଲିଆସୁଚି ଭିତରକୁ
ଦେହଟା ଖାଲି ହେମାଳ ଲାଗୁଛି ।
ପବନ ଛୁଇଁଯାଉଛି ଦେହର ପରିଧି
ନିଦରେ ଟଳମଳ ଆଖିଦୁଇପତା
ନିଜପାଖେ ନିଜେ ବଂଦୀହେଉଅଛି ।।

ଝର୍କା ସେପଟେ ପୃଥିବୀଟା ଭିନ୍ନ ଦିଶେ
ସତେ ଯେମିତି ମୋଠାରୁ ବହୁତ ଦୂରରେ ।
ହଜିଯାଇଥିବା ଗୋପନ ପ୍ରେମକୁ
କିଏ ଗୋଟେଇ ନିଏ ଓ ରଖିଦିଏ
ମୟୁର ଚନ୍ଦ୍ରିକାଟିଏ ରଖିବେଲାଭଳି
ଭଲପାଉଥିବା କବିତା ବହିରେ ।।

ଦେହକୁ ବାଧିଲାଭଳି କଥାଗୁଡ଼ା
କୁଆଡ଼େ ଯିବେ ବୋଲି ଭାବି
ଅଟକି ଯା'ନ୍ତି ଝରକା ସନ୍ଧିରେ ।
ବାହାରକୁ ବାହାରିଲେ ଅନୁଭୂତିଟିଏ

କିଏ କାଳେ ଦେଖିଦେବ ବୋଲି
ଲୁଚିଯାଏ ହୃଦୟ ଭିତରେ ।।

ଝର୍କାବାଟେ ବାହାର ଦିଶେ
ସୁନ୍ଦର ଗୋଟେ ଚିତାବାଘ ପରି
ଚିତ୍ରିତ ଦେହଟା ତା'ର ଝାମ୍ପଦିଏ
ନିଃଶବ୍ଦରେ ଅରାଏ ବାସନାକୁ ବାରି
ଛୋଟ ଛୁଆପରି ଅଝଟକରେ ।
ଓ ଝର୍କା ବନ୍ଦ ନକରିବାକୁ
ଅନୁରୋଧ କରେ ।।

ଦରଆଉଜା ଝର୍କା ବାଟେ
ଭିତରକୁ ଉହୁଙ୍କି ଋହିଁବାର
ଅଭ୍ୟାସରେ ଛଟପଟ ହୁଏ
କାହାର କାହାର ଅପଲକ ଦୃଷ୍ଟି ।
ସେ ତ ଆଉ କେହି ନୁହଁ
ମୁହଁ ଘୋଡ଼ାଇ ଠିଆହୋଇଥିବା
ଜେଲ୍‌ରୁ ଫେରାର୍ ଗୋଟେ ଖୁନି ଅପରାଧୀ ।।

ଝର୍କାବାଟେ ପାହାଡ଼କୁ ଦେଖିଲେ
ଲାଗୁଛି ଗୋଟେ ଦନ୍ତାହାତୀ ପରି
ସୂର୍ଯ୍ୟ ବୁଡ଼ିବାର ଦୃଶ୍ୟ ଓ ମେଘ
ଧକ୍‌କା ଖାଇ ବର୍ଷିବାର ମୁହୂର୍ତ୍ତ
ରଫ୍‌ଖାତାରେ ରଚନା ଲେଖିବାକୁ
ବାଧ୍ୟ କରୁଛି ଓ ଦନ୍ତା ହାତୀଟିର
ଜୀବନ ବୃତ୍ତାନ୍ତ ଲେଖିସାରିବା ବେଳକୁ
ଝରକା ଆପେ ଆପେ ଆଉଜି ଯାଉଛି ।।

ଝର୍କା ଖୋଲିଲେ ଅଂଗେ
ନିଭାଇଥିବା ଅନୁଭୂତି ଗୁଡ଼ିକ
ଗୋଟିଏ ପରେ ଗୋଟିଏ ଦେଖା ଦେଉଛନ୍ତି
ସତେ ଯେମିତି ଡାଏରୀର ପୃଷ୍ଠା
ପରେ ପୃଷ୍ଠା ଓଲଟାଉଛନ୍ତି
ଝର୍କା ଖୋଲିବାକୁ ମୁଁ ଡରୁଛି ।
ମୋ କଳାକର୍ମମାନ ମନେପଡ଼ିବାରୁ
ନିଜ ଭିତରେ ନିଜେ ମୁଁ ମରୁଛି ।।

ଝର୍କା ଖୋଲି ଦିଅ
ମୋ ଭିତରେ ଲୁଚିରହିଥିବା
ଅହଂକାର ଟିକକ ପୋଛିହୋଇଯାଉ ।
ହେମାଳ ପବନରେ ମନଟା ମୋର
ଆହୁରି ହେମାଳିଆ ହେଉ ।। ❑❑

# ମନ୍ଦିର

ମନ୍ଦିର ଭିତରେ ପଶୁପଶୁ
ଆମ ଗାଁ ଠାକୁର ମୋତେ ଦେଖାଗଲେ
ଦର୍ଶନ ଦେବା ବାହାନାରେ
ମୋ ଭିତରେ ଭକ୍ତି ଭରିଦେଲେ
ଖୁସିରେ ଫାଟି ପଡ଼ିଲା
ମୋ ମୁଣ୍ଡ ଉପର ଆକାଶ
ଆଖି ଆପେ ଆପେ ବଂଦ ହୋଇଗଲା ।
ଓ ମୋ ଭିତରେ ଅନ୍ଧାରଟା
ଆଲୁଅ ଦିଶିଲା ।।

ଦୀପଟିଏ ଜଳେଇଲେ
ମୋତେ ଲାଗୁଥିଲା ମୁଁ କରିଥିବା
ପାପତକ ମୋ ନିଜ ହାତରେ
ନିଜେ ଜଳେଇ ଦେଉଛି
ମୁଣ୍ଡିଆ ମାରିଲେ ମୋର
ଅହଂକାରତକ ସତେଯେମିତି
ଠାକୁରଙ୍କ ପାଖେ ମୁଣ୍ଡ ନୁଆଁଉଛି
ହାତ ଯୋଡ଼ିଲେ ମୋ ମନ

ତାଂକ ସହ ଯୋଡ଼ି ହେଉଥିଲା ।
ହାତ ଟେକିଦେଲେ ତାଂକ ଘରିପାଖରେ
ବ୍ରହ୍ମାଣ୍ଡ ମୋତେ ଦିଶୁଥିଲା ।

ତାଙ୍କ ଓ ମୋ ଭିତରେ ତଫାତ୍
ମୋତେ ବାଧକଲା ତାଂକୁ ଭକ୍ତି କରିବାକୁ
ଶୂନ୍ୟରେ ସଂକଳ୍ପକରି ତାଂକ ପାଖେ
ନିଜକୁ ସମର୍ପି ଦେବାକୁ
ସିଏ କିଂତୁ ହସୁଥିଲେ, ମିଶୁଥିଲେ
ମୋ ସହ କିଛି ନ ଜାଣିଲା ପରି ।
ସୁବିଧା ସୁଯୋଗ ଦେଖି ମୋ ଭିତରେ
ଚେନାଏ ଚେତନା ଦେଉଥିଲେ ଭରି ।।

ମନ୍ଦିର ବେଢ଼ାଟି ମୋ
କଳ୍ପନାରେ ଆଂକୁଥିବା
କୋଇଲି ବୈକୁଣ୍ଠ ପରି ଲଗୁଥିଲା ।
ତା'ଭିତରେ ବୁଲିଲେ
ମୋ ଭିତରର ଅନ୍ଧକାର
ମୋତେ ପରିଷ୍କାର ଦେଖାଯାଉଥିଲା ।।

ପ୍ରସାଦ ଟିକିଏ ପାଇଲେ
ମୋତେ ଲାଗୁଥିଲା ମୋ
ଭିତରର ଭୋକ ଶୋଷ
ମୋତେ ଭୁଲି ଯାଇଛନ୍ତି ।
ମୋ ତାଳୁରୁ ତଳିପାଯାଏ

ନିଘୋଡ଼ ନିଦରେ ସତେ ଯେମିତି
ଶୋଇପଡ଼ିଛନ୍ତି ।।

ମନ୍ଦିର ଭିତରୁ
ବାହାରୁ ବାହାରୁ ଦେଖୁଥିଲି
ମୁଁ ମନାସିଥିବା ମାନସିକମାନେ
କେମିତି ମୋତେ ଋହିଁ ରହିଛନ୍ତି ।
ଠାକୁର ହସିହସି ମୋତେ
ଅଭୟ ଦେବା ଆଳରେ କେମିତି
ବିଦାୟ ଦେଉଛନ୍ତି ।। ❑❑

# ପ୍ରତିହତ ପ୍ରତିଭା

ରାତି ପାହି ହେଉଛି ସକାଳ ।
ସେ ଗୋଟାପଣେ ଥରୁଚି
ଓ ଡରି ଡରି ଦେଖୁଚି ତା ଘରିପାଖ
ସାରା ଭୂମଣ୍ଡଳ ।।

କାଲି ରାତି ତା' ପାଇଁଥିଲା
ତାକୁ ପରଖିବାର ସମୟ
ସ୍ୱପ୍ନରେ ନିଦକୁ ତା'ର ବଂଧା ପକାଇ
ସେ ହଜିଯାଇଥିଲା । ବର୍ଷାରେ
ଭିଜାଇଦେଇଥିବା ତା' ସ୍ୱଭିମାନକୁ
ତିଳତିଳ କରି ଖୁମ୍ପି ଖାଲିଥିଲା
ତା' ଘୁଣଲଗା ଅୟସକୁ
ଏକୁଟିଆ ହୋଇ ଚଳିବାକୁ
ସେ ବାଧ କରୁଥିଲା ।
ତା' ଚାଲୁଥିବା ବାଟରେ
ଭେଟୁଥିବା ନିର୍ଜନତାକୁ
ତରବର ହୋଇ ସେ
ଗୋଟେଇ ନେଉଥିଲା ।।

ଏତୁରୁ ଏତୁଟିଏ କେତେବେଳେ ହେଲା
ସେ ଜାଣି ପାରିଲାନି
ଲୁଚିଯାଇଥିବା ଶବ୍ଦର ସହରକୁ
ସେ ଖୋଜି ପାଇଲାନି
ତା' କୋଳରେ ଝୁଲୁଥିବା
ପିଲାଦିନକୁ ସେ
ପଚାରୁଥିଲା ଗେଲକରିବାର ବେଳ ।
ତାକୁ ପଛରେ ପକାଇ
ଚାଲିଯାଉଥିବା ନିଃସଂଗତାକୁ
ଛୁଇଁବାକୁ ସେ ଅପେକ୍ଷା
କରୁଥିଲା କାହିଁ କେତେକାଳ ।।

ପିଲାଦିନୁ ଭଲ ପାଠ
ପଢ଼ିଆସୁଥିବା ପିଲାଟି
ଦିହଦିହ ହୋଇ ପାଠକୁ
ପାଶୋରି ପରକରିଦେଲା
ଚିନ୍ତାର ଚଉହଦିକୁ ପାରହେବାପାଇଁ
ଚେଷ୍ଟା କରି କରି ଚେତନାକୁ
ହରାଇ ବସିଲା ।
କଅଁଳି ଆସୁଥିବା କୋମଳ କଳ୍ପନା
ଟିକକ ତା ଅଜାଣତରେ କେତେବେଳେ
କଳା ପଡ଼ିଗଲା
ଭଲରେ ବଂଚିବାର ସବୁଜ
ସଙ୍କେତଟିଏବି ତା'ପାଇଁ
ଦୁର୍ବିସହ ହେଲା ।

ଦୁନିଆକୁ ବାସ୍ତବତାର ନିକିତିରେ
ତଉଲିବାକୁ ତା'ର ଶକ୍ତି ପାଇଲାନି ।
ହୃଦୟର ଗତିକୁ ଆଙ୍ଗୁଠି ଟିପରେ
ମାପିମାପି ଅଜଣା
ଆଶଙ୍କାରୁ ସେ ମୁକ୍ତି ପାଇଲାନି ।।

ଭଲ ଗୀତ ଗାଉଥିବା ପିଲାଟି
କାହିଁକି କେଜାଣି ଆଉ
ଗୀତବୋଲିଲାନି ।
ସଂଗୀତ ସୁରରେ ବାଂଧି ହୋଇଥିବା
ରାଗଗୁଡ଼ିକୁ ମନଭରି
କାହିଁ ଆଉ ଭଲ ପାଇଲାନି ।।

ଜୀବନର ଛବି ଆଂକୁ ଆଂକୁ
ତା'ହାତ ଅଂକା ଛବି ସବୁ
କାହିଁ ହଜିଗଲେ ।
ତା'ଅଜାଣତରେ ଏବେବି
ଟାଣିହୋଇ ଯାଉଥିବା ଗାର ସବୁ
ଛବି ହେବା ପାଇଁ ତାକୁ ହେଜି ହେଲେ ।।

ସେ କିଂତୁ ଜାଣିପାରିଲାନି
ତା'ଭିତରେ ଲୁଚିରହିଥିବା ସାମର୍ଥ୍ୟକୁ
ଭୋଗ ସହ ରୋଗକୁ ଯୋଡ଼ିଲା
ବେଳେବେଳେକୁ ସବୁବେଳ କରିଦେଇ
ଜାଣିଶୁଣିଦୁଃଖକୁ ଲୋଡ଼ିଲା ।। ❑❑

# ବର୍ଷା

ବର୍ଷାର ଓଦା ଦେହ
ବାରିହୋଇ ପଡୁଛି
ଗୁଳଘର ମାଟିକାନ୍ଥରେ
ସ୍କୁଲକୁ ଯାଉଥିବା ଝିଅଟିର
ପିଠିରେ ଓହଳି ପଡ଼ିଥିବା
ଖାକି ବ୍ୟାଗ୍‌ରେ
ପାଣି ସୁଅରେ ଭାସିଯାଉଥିବା
କୁନିପିଲାଟିର ହାତ ତିଆରି
କାଗଜ ଡଂଗାରେ
ଏବଂ
ପକ୍‌କାଘର ବାଲ୍‌କୋନି ତଳେ
ବହୁଦିନରୁ ପରିତ୍ୟକ୍ତ ହୋଇ
ପଡ଼ିଥିବା ପାଣି ଟବ୍‌ରେ

ମନେପଡୁଛି ଦାମ ସାର୍
ଦେଇଥିବା ରଚନା
"ବର୍ଷାକାଳରେ ପଲ୍ଲୀର ଦୃଶ୍ୟ"ର

କିୟଦଂଶ
କବିକବି ଭାବ ଆସୁଚି ମନରେ
କବିତା ଲେଖିବା ପାଇଁ
ମିଳିଯାଉଛି ନିରୋଳା ମୁହୂର୍ତ୍ତିଟିଏ
ଭଲ ଲାଗୁଛି ଭାବି ଦେଲା
ବେଳକୁ ନିଜେ କବିଟିଏ

ବର୍ଷା ଥମିଲାରୁ
ଗଛଡାଳ ନଇଁପଡୁଚି
ତଳକୁ । ଓଦା ମାଟିର ମହକରେ
ପବନର ସାଇଁ ସାଇଁ
ଗର୍ଜନରେ ନିର୍ଜନ ଲାଗୁଛି ବସୁଧା
ଆକାଶ ଛାତିରୁ
ଉଡ଼ିଯାଉଛି ବହୁଦୂରକୁ
ଢାଙ୍କି ହୋଇଥିବା ମେଘର ଝଦର
ମେଞ୍ଚାଏ ଆଲୁଅର ରୋଷଣୀରେ
ହଠାତ୍ ଫର୍ଚା ଦିଶୁଚି ଚତୁର୍ଦ୍ଦିଗ
ପୁଣି ପବନରେ
ଭାସି ଆସୁଚି କଳାହାଣ୍ଡିଆ
ମେଘ ଖଣ୍ଡେ କେଉଁଆଡୁ
ଅନ୍ଧାର ଓଢ଼ଣୀତଳେ
ଆକାଶ ଲୁଚଉଛି ମୁହଁ ।
ମେଘ ପାଲିଙ୍କିରେ କିଏ ଆସେ
ଏକ'ଣ ବର୍ଷାର
ସେହି ଓଦା ଦେହ !

ଯେତେ ଚେଷ୍ଟା କଲେବି
ଦେଖିହେଉନି ନିଜକୁ
ବର୍ଷାଜଳ ଚହଲୁଚି ବାରଂବାର
ଜଳଛବି ଅସ୍ପଷ୍ଟ ଦିଶୁଛି
ଆକାଶର ଅସରନ୍ତି ଇଲାକାରେ
ଛାଇ ଆଲୁଅର ଖେଳ
ସତେ କେ ରଚିଛି । ❑❑

# ସନ୍ଦେହ

ସେମିତି କିଛି ଘଟିନାହିଁ
ମୋ ଜାଣତରେ ।
ତୁମଛଡ଼ା ସେପରି
କାହାକୁ ବି ମୁଁ ଭେଟି ନାହିଁ
ମୋ ଜାଣିବାରେ ।।

ସଂଦେହର ପାଚେରୀଟିଏ
ପରଖୁଚି ତୁମ ଓ ମୋ
ଭିତରେ ଥିବା ଅଜସ୍ର ସ୍ନେହକୁ ।
ନିରେଖୁଛି ତୀକ୍ଷ୍ଣ ଦୃଷ୍ଟିରେ
ମୋ ଚଲିଚଲଣିରେ
ଘଟିଯାଉଥିବା ଛୋଟ ଛୋଟ
ଘଟଣା ଓ ଦୁର୍ଘଟଣାମାନଙ୍କୁ ।।

ତୁମେ ମୋର ସବୁକିଛି ବୋଲି
ଭାବିବାଟା ଯଦି ଭୁଲହୁଏ
ଅଭିଧାନର ନିର୍ଦ୍ଦିଷ୍ଟ ପୃଷ୍ଠାରେ
ପ୍ରେମ ଓ ପ୍ରଣୟର ସଂଜ୍ଞା ବି

ଯେବେ ବଦଳିଯାଏ ।
ତୁମ ଓ ମୋ ଭିତରେ ବ୍ୟବଧାନ
ବଢ଼ିବାଟା ସ୍ୱାଭାବିକ ହୋଇଯାଏ

ଜୀବନର ସୂକ୍ଷ୍ମ ଅବବୋଧ
ଟିକକୁ ନେଇ
ବଂଚିବାର ଯେଉଁ ସୁଖ
ତୁମେ ବୁଝିପାରୁନ
ବାଟ ଚାଲୁଚାଲୁ ଝୁଣ୍ଟିପଡୁଛ
ଲହୁଲୁହାଣ ହେଉଛ
ଓ ମାପି ପାରୁନ ଅନୁଭବମାନଙ୍କୁ
ତୁମର ସେ ଧୈର୍ଯ୍ୟ ଓ ସାହସର
ମାପକାଠିରେ ।
ସାମ୍ନା କରିପାରୁନ ବର୍ତ୍ତମାନକୁ
ସୁସ୍ଥ, ନିରୋଳା ମାନସିକତାରେ ।।

ଉପରକୁ ତ ସବୁ
ଚମତ୍କାର ଲାଗୁଛି
ମୁଁ ଜାଣିପାରୁନି
ଚତୁଃପାର୍ଶ୍ୱରେ ବେଢ଼ିରହିଥିବା
ପରିବେଶ ଓ ପରିସ୍ଥିତି
ମୋ ସାଂଗେ କାହିଁ ଏତେ
ଦାଉ ସାଧୁଛନ୍ତି ?
ଅପେକ୍ଷାରତ ମୁହୂର୍ତ୍ତମାନଙ୍କୁ
କାହିଁକି ବା ଛଳନାର
ଫୁଲତୋଡ଼ା ସବୁ
ଭେଟି ଦେଉଛନ୍ତି ।। ❑❑

# ଜନ୍ମଦିନ

ବୟସର ଲଂବା ଛାତିପରେ
ପରସ୍ତ ପରସ୍ତ ଧୂଳିକୁ ଉଖାରି
କଅଁଳିଆ ସକାଳର ପାଦରଖିବାକୁ
ଉହୁଙ୍କି ଚାହୁଁଥିବା ମୋ ଦରୋଟି ଦୃଷ୍ଟି
ପରିପକ୍ୱ ପୃଥିବୀକୁ ଭେଟିଦିଏ
ଗୋଟିଏ ସୁନେଲି ବର୍ଷର
ସୁରଭିତ ମୁହୂର୍ତ୍ତ କେତୋଟିକୁ ।

ଅଂଗେ ନିଭେଇଥିବା ଅନୁଭୂତି ଗୁଡ଼ିକ
ଅଝଟ କରନ୍ତି ବାରଂବାର
ମୋ ପିଲାଦିନ ସାଂଗେ
ବୋଉର କାନିଧରି ଚାଲିବା କେମିତି
ବାପାଙ୍କ ନାଲିଆଖିକୁ ବି ଚୁପ୍ କରିଦିଏ
ଛାଇଛାଇ ନିଦରେ ସାଂଗମାନେ ଦେଖାଯା'ନ୍ତି ।
ଚକୋଲେଟ୍, ବେଲୁନ୍ ଓ ହାତତିଆରି କେକ୍‌ରେ
ନାଚଗୀତ ଖୁସିର ଆସର
ମୋ ଜନ୍ମଦିନକୁ ସତେ ଯେମିତି
ଚାହିଁ ବସିଥା'ନ୍ତି ।

ତିଥି, ବାର, ନକ୍ଷତ୍ର ଆପେ ଆପେ
ପହଞ୍ଚାଇ ଦିଅନ୍ତି ଜନ୍ମଦିନର ଠିକଣା
ତୁନି ପଡ଼ିଯାଇଥିବା ଘରିଆଡ଼
ହଠାତ୍ ଚଳଚଞ୍ଚଳ ହୋଇଉଠେ
ଭାସିଯାଉଥିବା ଭାବନାଗୁଡ଼ିକ
ବାସ୍ତବତାର ଆଇନାରେ
ପ୍ରତିଫଳିତ ହୁଅନ୍ତି ।
ଲଂବା ଭବିଷ୍ୟତକୁ ଆଖିରେ ରଖି
ଜନ୍ମଦିନକୁ ଖାଲି ସ୍ୱାଗତ କରନ୍ତି ।।

ସମୟ ପାଖରେ ନିଜକୁ ସମର୍ପଣକରି
ଆନନ୍ଦରେ ଅଧୀର ହୋଇଉଠେ ଜନ୍ମଦିନ
ଉତ୍କଣ୍ଠାର ସହିତ ଅପେକ୍ଷା କରନ୍ତି
ଉପହାରମାନେ
ଭେଟିହେବା ପାଇଁ ଜନ୍ମଦିନର ।
ସୋରା ସୋରା ସ୍ନେହର ସହର
ହୋଇଉଠେ ଉତ୍ସବମୁଖର ।।

ଦେବା ନେବାରେ ସ୍ନେହ ମପାଯାଏ
ଦେବା ଲୋକ ଲାଗନ୍ତି ନିଜର ।
ଶୁଭେଚ୍ଛାରେ ଶୁଣାଯାଏ
ଜନ୍ମଦିନର ସଂଗୀତ ଓ
ହାତ ପ୍ରସରିଯାଏ କୋଳେଇ ନେବାକୁ
ପୋଷ ପୋଷ ପ୍ରୀତି ଉପହାର ।।

ବୟସ ବଢ଼ିଲେ ଲୁଚିବାକୁ
ଇଚ୍ଛାହୁଏ ଜନ୍ମଦିନକୁ

କିଏ ଯେମିତି କହିଦିଏ
ବାର୍ଦ୍ଧକ୍ୟ ଆସୁଛି ଶୀଘ୍ର
ମୃତ୍ୟୁକୁ ସାମ୍ନା କରିବାକୁ
ପିଲାଦିନେ ଯାହାକୁ ଖୋଜାଯାଏ
ଆସନ୍ତା କି ସିଏ ପ୍ରତି ଛ’ ମାସରେ ଥରେ
ଏମିତି ପୁଣି ବେଳ ଆସେ
ତା ଆସିବା ଶୁଣି ଦେହମନ ଥରିଉଠେ
ଓ ମନହୁଏ ପ୍ରତିବର୍ଷ ନ ଆସି
ଆସନ୍ତା କି ଥରେ ସିଏ ତିନ୍‌ଚାରିବର୍ଷରେ ।

ବଡ଼ରୁ ଛୋଟ ହୋଇଯାଏ
ଧୀରେ ଧୀରେ ଜନ୍ମଦିନ
ଲୁଚିଯାଏ ବୟସ ଦେହରେ
ଖୋଜି ଲୋଡ଼ି ସଙ୍ଗୋଳି ନେବାକୁ
କେହି ଆଉ ନଥା’ନ୍ତି ସାଥୀରେ ।। ❑❑

# ଚିନ୍ତା

ମନରେ ବାନ୍ଧିଛି ବସା
ଚିନ୍ତାର ସେ ଭୟଙ୍କର ରୂପ
ଦେହମନ ଥରିଉଠେ
ସ୍ପର୍ଶ ତା'ର ଅତ୍ୟନ୍ତ ଅଦ୍ଭୁତ ।
ଅଶ୍ରୁସିକ୍ତ ଭାବନାରେ
ଲୋଟିଯାଏ ବଂଚିବାର ତିକ୍ତ ଅନୁଭୂତି
ମରଣ ଦୁଆରୁ ଦେଖେ
ଅତୃପ୍ତ ଆତ୍ମାଟି ତା'ର ସ୍ୱପ୍ନ ଅସରନ୍ତି ।
ଚିତାରେ ଜଳେ ଶରୀର
ଚିନ୍ତାରେ ଜଳୁଥାଏ ମନ
ଥରେମାତ୍ର ଚିତା ଜଳେ
ଅହରହ ଚିନ୍ତାର ଜ୍ୱଳନ ।
ଅଜଣା ଆଶଙ୍କା ଭିତରେ
ଚିନ୍ତାର ସେ ଅଶାନ୍ତ କୁହୁଡ଼ି
ଭୟର ଇନ୍ଦ୍ରଜାଲ ରଚେ
ଦିନରାତି ନହୁଅଇ ବାରି ।
ଚିନ୍ତାରେ ତାତଇ ବୈଶାଖ
ପ୍ରକଟଇ ତା'ର ଉଗ୍ରରୂପ
ଚିନ୍ତାରେ ତିନ୍ତଇ ଶ୍ରାବଣ
ନିଗିଡ଼ାଇ ଲହୁର ଲୋତକ । ❑❑

# ଶବ୍ଦକୁ ସାଉଁଟିନେଲେ

ଶବ୍ଦକୁ ସାଉଁଟି ନେଲେ ସ୍ୱପ୍ନର ଓଠରୁ
ସ୍ମୃତିକୁ ବନ୍ଦୀକଲେ ପ୍ରେମର ସୁନା ଶିକୁଳିରେ
ମନରେ ଆସେ କବିକବି ଭାବ,
ତୁମକୁ ନେଇ କବିତାଟିଏ ଲେଖିବାର
ଉପାଦାନ ମିଳିଯାଏ ଓ
ଆତ୍ମହରା ଆନନ୍ଦର ମୁଗ୍ଧ ଅନୁଭବ ।

ଅସ୍ରାଏ ବର୍ଷାର ଅଜସ୍ର ଅଲିଭା ଦାଗ
ମନରେ ମୋ କ୍ଷତ ସୃଷ୍ଟିକରେ,
ତୁମର ସେ ଲଳିତ ଲୋଭିଲା ମୁହଁ
ପର୍ଦ୍ଦା ହୋଇ ଧାରୁଆ ଆଖିରେ ଓହଳେ ।
ଉଜାଣି ଯମୁନା ତଟେ ତୁମର ସେ ରାଧାରାଧା ବେଶ
ବଂଶୀକୁ ଉଚ୍ଚାଟ କରେ ମୋତେ ବି ଅବଶ / ବିବଶ
ଆଖିର ଝର୍କାରେ ମୋର
ତୁମେ ଏକ ମାଟିର କଣ୍ଢେଇ,
ଯେତେବେଳେ ଋହଁ ଭାଂଗିଯାଅ
ପୁଣି କେତେବେଳେ ମନକୁ
ଆକର୍ଷି ନିଅ ଯୋଡ଼ି ହୋଇଯାଇ ।

କେତେବେଳେ ଦୁବଘାସ ପରି ଚକ୍‌ଚକ୍
ପୁଣି କେତେବେଳେ କୁହୁଡ଼ିରେ ଝାପ୍‌ସା ଦିଶ,
କେତେବେଳେ କଅଁଳ ସୂର୍ଯ୍ୟର ଖରା
ପୁଣି କେତେବେଳେ ମୋତିହୋଇ
ଲାଜରେ ଲୋଟୁଥିବା ଶାମୁକାରେ ପଶ ।

ପାଖକୁ ମୋର ଆସ
ଭାଂଗି ପଡ଼ିଥିବା ଆକାଶକୁ
ତୁମ କାନ୍ଧରେ ଭରାଦେଇ ଡେରିଦିଏ,
ଓ ସରିଆସୁଥିବା ଜୀବନକୁ
ତୁମ ହାତ ପାଆନ୍ତାରେ ସାରିଦିଏ । ❑❑

# ଚଲାପଥ

ତାରାଙ୍କର ବୟସ ନଥାଏ
ଆକାଶରେ ଫୁଟିବାର ବେଳେ
ଫୁଲପରି ଦୃଷ୍ଟିର ପଦ୍ମବନେ
ଦପ୍‌ଦପ୍ ହେବାରେ ଅସ୍ଥିର ଆବେଗ
ଭିଡ଼ି ଧରୁଥାଏ ସୁଖ ସମ୍ଭୋଗର ବେଳ,
ଏ ତ ଦିନିକିଆ କଥା ନୁହଁ
ଚାଲି ଆସିଚି ସଦା କାଳକାଳ ।

ମୋ ବୟସ କିନ୍ତୁ ବିକଳ୍ପ ଖୋଜୁଛି
ବୟସାଧିକତାରୁ ବିଦାୟ ନେବାକୁ,
ମୋତେ ଦହଗଞ୍ଜ କରୁଥିବା
ଦୁଷ୍ଟ ଲକ୍ଷ୍ୟଭ୍ରଷ୍ଟ ଚଲାପଥ
ବାରଣ କରୁଛି ମୋତେ ସେଠି ଚାଲିବାକୁ ।

ମୋ ଚାଲିବାରେ ଯାଏ ଆସେ କେତେ
ଚତୁର୍ଦ୍ଦିଗ ମୋତେ ଫର୍ଚ୍ଚା ଦିଶୁନାହିଁ,
ଯେତେ ଯେତେ ଅପରାଧ ଅନୈତିକ କାର୍ଯ୍ୟ
ଚାହିଁ ଦେଖେ ମୋ ପଛେପଛେ ଆସୁଚି ଗୋଡ଼େଇ ।

ମୋ ଦେହକୁ ଘେରେଁ, ଘଡ଼ିଏ ଅନାଏ,
ଅନ୍ଧାର ଦିଶୁଚି ଆଗକୁ ମୁଁ ଯେତେଯେତେ ଯାଏ ।

ଆକାଶ ହିଁ ସ୍ୱପ୍ନ ପୁଣି ସ୍ୱପ୍ନ ହିଁ ଆକାଶ
ପ୍ରତିଟି ଭାବନା ମୋର ତାରା ପରି ଦିଶେ ।
ଭାବନାର ତାରାଭାବ ନିଶ୍ଚିହ୍ନ ଆବେଗ
କେତେବେଳେ ହସେ ପୁଣି
କେତେବେଳେ ମୋ ବୟସରେ ମିଶେ ।
ମୋ ବ୍ୟସ୍ତ ବିବ୍ରତ ଘେରାଣିରେ
ମୋତେ ଦିଶେ ଜଳଜଳ ମୋର ପ୍ରତିଶ୍ରୁତି,
ଚହଲଇ ବାରଂବାର ଭାବନାର ଦୃଶ୍ୟପଟ
ଲଭିବାକୁ ବଂଚିବାର ଅଶେଷ ସ୍ୱୀକୃତି । ❑❑

## ଛାଇ

ଖୁସିରେ ମଣିଷ କିଛିଦିନ
କାଟିବ ବୋଲି ଭାବିଲାବେଳକୁ
କେଉଁଠିଥିଲା କେଜାଣି ଛାଇଟିଏ
ଠିଆ ହେଲା ଆସି
ମୋ ପଢ଼ାଘର ଆଲୁଅ ପାଖରେ,
ମୁଁ କିଛି ପଚାରିବା ପୂର୍ବରୁ
ମୋ ବିଷୟରେ ସବୁକିଛି
କହିଗଲା ଏକା ନିଶ୍ୱାସରେ ।

ଡରିଗଲି ତାକୁ ଦେଖି
ମୋ ଭିତରଟାକୁ ଏତେଭଲକରି
କେମିତି ଜାଣିଲା । ମୋର କିଛି
ଘଟିବା ଆଗରୁ ସତେ ଯେମିତି
ମୋତେ ସତର୍କ କରାଇ ଦେଲା ।

ମୋ ଦିହକ ଯାକରେ ଅର୍ଜିଥିବା
ମୋ ଜାଣିବା ପଣ ମୋଠାରୁ
ଛଡ଼େଇ ନେଲା କି ବଡ଼େଇ ତା'ର,
ମୋ ହାତରେ ଧରିଥିବା
ବ୍ୟସ୍ତ ଅନୁଭୂତି ସବୁ

ମୋ ଅଲକ୍ଷରେ କାହିଁ କେତେବେଳେ
ମୋତେ କରିଦେଲେ ପର ।

ମୋତେ ଦେଖୁଥିବା ମୋ
ଘରିକଡ଼ ସମସ୍ତ ଅବସ୍ଥା
କିଛିଗୋଟେ ବ୍ୟବସ୍ଥା କଲେନି ମୋପାଇଁ ।
ଏମିତି ହେଲା ଆଗକୁ ସଳଖ
ଦିଶୁଥିବା ରାସ୍ତାରେ ମୁଁ
ଝୁଣ୍ଟିପଡ଼ି ଚାଲିଥିଲି ଆଗକୁ ଆଗେଇ ।।

ଜାଣିବାକୁ ବାକିଥିଲା ମୋ
ଭିତରର ବ୍ୟଥା ଓ ବେଦନା
ଏକ ଅସମ୍ପୂର୍ଣ୍ଣ ଜୀବନର
ଭଗ୍ନ ଇତିହାସ,
ଛାଇକୁ ପଚାରି ବୁଝିଲି
ସେ ଖାଲି ହସୁଥିଲା ପବନରେ
କରି ମୋତେ ଥଟ୍ଟା ପରିହାସ ।।

ମୁଁ ଖୋଜୁଥିଲି ମୋତେ ମୋ ଭିତରେ
କେତେବେଳେ ଦୁଃଖ ପାହାଚରେ ତ
କେତେବେଳେ ସୁଖର ସିଡ଼ିରେ ।
ମୋ ଭିତରର ମୁଁ ମୋତେ କାବୁକରିଥିଲା
ନିଜକୁ ଭଲ ପାଇବାର ଅନ୍ୟମନସ୍କତାରେ ।।

ସୁଖରେ ବଂଚିବାର ତୁହାକୁ ତୁହା
ଅଭିନୟ କରିଚାଲିଥିଲି
ଗୋଟିଏ ଅସମାପ୍ତ ଦୁଃଖର ଗାଲିଚା ଉପରେ,
ମୁଁ ଜାଣେନି କାହିଁକି ନିଜକୁ ନିଜେ ଡରୁଥିଲି
ଆପଣାର ଛାଇ ହୋଇ ଆପଣା ଭିତରେ । ❑❑

# ସଂଧାନ

ଏମିତି ଏକ ଯାଗାର ସଂଧାନରେ
ମୁଁ ଅନେକ ଦିନରୁ ଥିଲି
ଯେଉଁଠିଥିଲା ସବୁଆଡୁ ଢାକିଢୁକି ହୋଇଥିବା
କାଗଜ ଫର୍ଦଟି ଭଳି
ଲୋଥକୋଥ ନେଳିଆ ଆକାଶ
ମଲା ଲୋକର ହାଡ଼କୁ ହାତୁଡ଼ିକରି
ପିଟୁଥିବା ମାଆର ଲୋଳିତ ସ୍ତନ,
ଓ ଉଚ୍ଚାରିତ ବାକ୍ୟ ଗୁଡ଼ିକ ଭିତରୁ
ହଜିଯାଉଥିବା ଶବ୍ଦଗୁଡ଼ିକର ଚିହ୍ନବର୍ଣ୍ଣ ।
ଲୁହର ଲହଡ଼ିରେ ଅନାୟାସରେ ଭାସୁଥିବା
ଆଶାତୀତ ଆଗ୍ରହମାନଙ୍କର ଅସଂଖ୍ୟ ଭଗ୍ନମନ୍ଦିର,
ଓ ନିଜକୁ ନିଜେ ଭଲପାଇ
ହସୁଥିବା ଧୂର୍ତ୍ତ ସୌଦାଗର ।

ଏମିତି ଗୋଟେ ଯାଗାକୁ ମୋତେ
ବହୁପୂର୍ବରୁ ଆସିବାର ଥିଲା
ଭାରାକ୍ରାନ୍ତ ଯୌବନର ଜ୍ୟାମିତିକୁ
ଅନୁଧ୍ୟାନକରି ଏମିତି ଏକ ଯାଗାର

ନକ୍ସାକୁ ବହୁପୂର୍ବରୁ
ବଦଳାଇବାର ଥିଲା
କେଉଁ ଏକ ନର ପିଶାଚକୁ
ଠାବ କରିବାକୁ ଯାଇ
ମୁଁ ବହଳେ ଅନ୍ଧାରକୁ ଆପଣେଇଥିଲି,
ନିଜକୁ ନିଜ ଭିତରେ ହଜାଇଦେଇ ମୁଁ
ମିଛ ବାହାନାରେ ସତ ଖୋଜୁଥିଲି ।

ସତକୁ ଜାଣିବା ପୂର୍ବରୁ
ମିଛରେ ମୁଁ ମରିଯାଇଥିଲି,
ସଂପର୍କକୁ ଯୋଡ଼ିବା ପୂର୍ବରୁ
ବିତର୍କକୁ ବଳି ଦେଇଥିଲି
ମୁଁ ଯାହା ଚାହିଁଥିଲି ତାକୁ ତ ପାଇଲିନି
ଯୁଆଡ଼େ ଚାହିଁଲି ଦେଖିଥିଲି
ହଜିଲା ସୂର୍ଯ୍ୟର ଅସ୍ତ ହେବାର ଦୃଶ୍ୟ,
ଓ ହାରିଯାଇଥିବା ଲୋକର
ହରାଉଥିବା ସର୍ବସ୍ୱ ।

ନଇଁ ନଇଁ ବହୁଥିବା ବତାଶ ଦାଉକୁ
କେତେଦିନ ଅବା ସହିଥା'ନ୍ତି
ଲୁଚିଲୁଚି ଶୁଣୁଥିବା ଅକୁହା କଥାକୁ
କେତେଦିନ ଧରି ରଖିଥା'ନ୍ତି । ❑❑

# ଭସାମେଘ

କୁଆଡ଼େ ଥିଲା କେଜାଣି
ଭାସି ଆସିଲା ମେଘଖଣ୍ଡେ
ହଠାତ୍ ବର୍ଷିଗଲା ମନଭରି
ଓଦାମାଟିର ମହକରେ
ମହକିଲା ଘରଦ୍ୱାର
ମନର ଅଗଣା ଫର୍ଚ୍ଚା ଦିଶିଲା
ବାହାରକୁ ନଯାଇ ଘରେ
ବିଶ୍ରାମ ନେବାର ମସୁଧା କରୁକରୁ
ଆକାଶରେ ତାରା ଦେଖାଗଲେ,
ମନକୁ ଖଣ୍ଡିଆ ଖାବରା କରି
ମନେପଡୁଥିବା ଆଳାପ ଆଲୋଚନା ସବୁ
ମୋତେ ଭଲପାଇ ଭୁଲିହୋଇଗଲେ ।

ଆକାଶ ତ ତା ବାଟରେ ଥିଲା
ମେଘ ଖଣ୍ଡେ ଧରି ରଖିବାକୁ
ସେ କ'ଣ ମନାକରୁଥିଲା ?
କ'ଣ ପାଇଲା ଲାଭ
ତା' ଛାତିକୁ ବିଦାରି,

କୋଉ ବୁଦ୍ଧି ତା'ର ଦେଖି
ଆଖିରୁ ଲୁହହୋଇ
ନିମିଷକେ ଗଲା ସେ ନିଗିଡ଼ି ।

ଅସରାଏ ବର୍ଷାରେ ବା
କି ଲାଭ ହେଲା ବସୁଧାର ?
ଆଖି ପାଉନଥିବା ତାତି
କମିଲାନି ତ କାଣିଚାଏ ବରଂ
ବଢ଼ି ବଢ଼ି ଛୁଇଁଲା ଖରାର ଧଳା ଚକ୍ରବାଳ ।
ଭସା ମେଘ ଖଣ୍ଡେ ସିଏ
ଉପରେ ଉପରେ ଭାସିଗଲା,
ସଂଚିତ ସାମର୍ଥ୍ୟକୁ ତା'ର କିଏ
ରହୁଁ ବା ନ ରହୁଁ ବର୍ଷିଗଲା ।

ଦୁଃଖ ଆସେ ଅକସ୍ମାତ୍
ଖଣ୍ଡେ ଭସାମେଘ ପରି
ବହୁଦିନୁ ସାଇତି ରଖିଥିବା
ସୁଖର ଅଗଣାକୁ ସଫାକରିକରି
ସ୍ୱପ୍ନ ହୁଏ ସମ୍ଭାବନା
ତୁଟିଯାଏ ବଂଚିବାର ମୋହ,
କି ଦୁଃସାହସ ଦେଖି ଏଇ ଦୁଃଖ ଟିକକର
ମିଛେ ମିଛେ କରୁଥାଏ
ବଂଚିବାର ସୁଖ ଅଭିନୟ । ❑❑

# ବୋଉ

କେମିତି ତୋତେ ବୁଝାଇବି ବୋଉ
ତୋ ଦେହର ପ୍ରତିଟି ଅଣୁରେ
ଗଢ଼ା ମୋ ଶରୀର,
ତୋର ପ୍ରତିଟି ନିଃଶ୍ୱାସରେ
ବାରିହୋଇଯାଏ ମୋ ଭିତର ବାହାର ।
ତୁ ବୁଝିଲୁ ନାହିଁ ମୋ ପାରିବା ପଣକୁ
ମୋ ଭିତରେ ଆତଯାତ ତୋର ପ୍ରତିଛବି,
ଲୁହ ମୋର ଭେଦିଯାଏ ସଂପର୍କର
ସୁଦୀର୍ଘ ପାଚେରୀ, ଖାଲି ତୋର
ନିଃସ୍ୱ ନିଃସ୍ୱ କଥା ଭାବି ଭାବି ।

ପିଲାଦିନ ବେଳେବେଳେ
ଠିଆହୁଏ ମୋ ପାଖେ ଆସି
କହେ ବୋଉକୁ ତୋର ଗଲୁକି ପାଶୋରି
କାଖକରି ଲଂଗଳା ଦେହକୁ ତୋର
ବୁଝାଇ ଖୁଆଉଥିଲା କେଡ଼େ ଗେଲକରି
ଅଇଁଠା ମୁହଁକୁ ସଫାକରି
କାନିରେ ତା' ପୋଛି ଦେଉଥିଲା

ଆଖିରେ କଜଳ ଦେଇ
କିଏ ଖୁଣିବ କାଳେ ବୋଲି
କପାଳର ଗୋଟିଏ କଣକୁ
ଟିପାଟିଏ ଥାପି ଦେଉଥିଲା ।

ଦାଣ୍ଡରେ ମୁଁ ଖେଳୁଥିଲି
ଦିହହାତ ଧୂଳି ସରସର
କେହି ମୋ ସାଂଗେ ନ ଖେଳିଲେ
କହୁଥିଲି କହିଦେବି ବୋଉକୁ ମୋହର
ସାଂଗମାନେ ହସୁଥିଲେ
ଯେ ଯୁଆଡ଼େ ଯାଉଥିଲେ ଲୁଚି
ବୋଉଲୋ ବୋଉଲୋ ଡାକି ଦେଉଥିଲି ଯେବେ
ପୁଣି ଆସି ଯାଉଥିଲେ ମୋ ପାଖେ ପହଞ୍ଚି
ଦିନେ ବେଳବୁଡ଼େ ଓଳିତଳେ
ଠିଆହୋଇ ଥିଲି,
ଆଲୋ ଆଲୋ ଏଟାକୁ ଡାହାଣୀ
ଗ୍ରାସିବ କହି ଛେପ ଲେଣ୍ଡାଏ
ମୋ ଛାତିକୁ ଦେଲା ସେ ଫୋପାଡ଼ି ।

ଦାଉଦାଉ ଜଳୁଥାଏ ଖରାବେଳ
ଗାଁ ଦାଣ୍ଡ ନୀରବ ନିଶୂନ
କାଉ କି କୋଇଲି ନାହିଁ
ଘଡ଼ିଏ ପହରେ ଯୋଗୀଟିଏ ଦେଖାଦିଏ
କେନ୍ଦେରା କି ଧୁଡୁକି ବଜାଇ
ଲାଉତୁମ୍ବାଟିଏ ଧରି ଭିକ ମାଗୁଥାଏ
ଛାଇ ନେଉଟା ବେଳ ହେଲେ

ଗାଁ ଡୋଟା ପୁରିଉଠେ
କେଉଁଠି ଫୋପଡ଼ ଫିଙ୍ଗା
ନାକେଇ, ସିନ୍ଦୁରୀ ବା ବେଲପତ୍ର ଆମ୍ବ
ସମସ୍ତେ ଅନାଇଥା'ନ୍ତି
କେତେବେଳେ ତା'କୁ କିଏ ଝଡ଼ାଇବ ।
ବୋଉ ଆସେ ଲୁଚି ଲୁଚି
ମୋତେ ଖୋଜି ଖୋଜି,
ଆଖି ମୋର ବୁଜିଦିଏ
ତା' କୋଳକୁ ପଡ଼େ ମୁଁ ଆଉଜି ।

ସଂଜ ହେଲେ
ସଉପ ମଶିଣା ଖଣ୍ଡେ
ଦୁଆରେ ପାରିଦିଏ ବୋଉ
ମୁଁ ତା' କୋଳରେ ଶୁଏ,
ଆକାଶକୁ ଚାହିଁ ଜହ୍ନମାମୁଁ
ମେଘ, ତାରା କେତେ ସେ ଦେଖାଏ ।
ଧ୍ରୁବତାରା, କୁଆଁତାରା ସପ୍ତର୍ଷିମଣ୍ଡଳ,
ସତରେ ବୋଉ କୋଳେ ଶୋଇରହି
ଆକାଶ ଛାତିରେ କଷୁଥିଲି ଅଂକ
ଆଉ ପଢୁଥିଲି ଜ୍ୟାମିତି ଭୂଗୋଳ ।

ପିଲାଦିନ ଚାଲିଯାଏ ଆସ୍ତେ ଆସ୍ତେ
ବହୁ ଅନୁଭୂତିକୁ ଆଦରି
ବୋଉ ମୋର ରହିଯାଏ
ମୋଠାରୁ ଅନେକ ଦୂରେ,

କେବେ କେବେ ଦେଖାହୁଏ ତା'ସହ
ଛ'ମାସେ ବର୍ଷେରେ ଥରେ ।

ମୋଠାରୁ ଛଡ଼େଇନିଏ କିଏ ପିଲାଦିନ
ମୋ ଭିତରେ ଲୁଚେଇ ରଖେ
ମୋ ବଢ଼ିବା ପଣ
ତୁ ତ ଗଢ଼ାଇ ଦେଲୁ ମୋ ଘର ସଂସାର
ମୁଁ ଏବେ ନୁହେଁ ବି ନିଜର
କେମିତି ଭାବୁଚୁ ବୋଉ ମୁଁ
ହେବି ଗୋଟାପଣେ ତୋର
ତୁ ଭାବୁଛୁ ତୋ ଭଲ ପାଇବାଟା
ତୋ ଠାରୁ କିଏ ଛଡ଼େଇ ନେଇଛି
ମୁଁ ଜାଣିଛି ତୋ ଭଲ ପାଇବାଟା
ଆଗଭଳି ଅତୁଟ ରହିଛି । ❑❑

## ଡର

ଡାଲୁରୁ ଡଳିପାଯାଏ ପବନକୁ
ଘଷିମାଜି ଦେଲେ ଲୁହର ଲୁଣିଆ ଜଳରେ
ଆଉଁସିଦେବ ଶୂନ୍ୟରେ ସେ
ଝୁଲୁଥିବା ଜୀବନକୁ ମୋର
କୋଳେଇ କାଖେଇ ଶରଧାରେ ଗେଲକଲେ
ମୋ ପ୍ରାପ୍ତିର ପୂର୍ଣ୍ଣାଙ୍ଗ ଶରୀର
ଝୁରୁଥିବି ଦିନରାତି ହୋଇ ଆନମନା ।
ମୋ ଅଲକ୍ଷ୍ୟରେ ଘଟୁଥିବା ଅଘଟଣ ସବୁ
ମୁଁ ଜାଣିବି ଖାଲି ମୋର ଭାଗ୍ୟ ବିଡ଼ମ୍ବନା ।।

ଓଲଟି ରହିଁଲେ ବୃକ୍ଷ ଦିଶୁଚି ସୁନ୍ଦର
ଝୁଲୁଚି ସେ ଶୂନ୍ୟର ଖୋଲା ପଞ୍ଜୁରୀରେ
ମାୟାରେ ମୋହିତ ଜାଲ ଖଣ୍ଡେ
ବିସ୍ତରି ଯାଇଛି ଭାଗ୍ୟର
ହାତ ଅଂକା ମାନଚିତ୍ରଟିରେ ।
କିଏ ସେ କାଟିଛି କପାଳରେ ମୋର
ସମାନ୍ତର ଭାଗ୍ୟରେଖାମାନ
ଅନାଦି ଅକ୍ଷୟ ସିଏ ନାହିଁ ତାର

ଆଦି ଆଉ ଅନ୍ତ ।
ପ୍ରବୃତ୍ତି ଓ ପ୍ରକୃତିର ପୂର୍ଣ୍ଣ ସମନ୍ୱୟ
ଅହଂବାଦୀ ପାପକୁ ଘୋଡ଼େଇ ରଖେ
ପୂଣ୍ୟର ପଣତ ।।

ନିଶବ୍ଦ ଯାଇଛି ଶୋଇ
ଶବ୍ଦର ଖାଦମିଶା ସୁନାଗାଣ୍ଠିଲିରେ
ହତାଶ ଆସୁଛି ମାଡ଼ି
ଲୁଚିଛପି ଅକସ୍ମାତ ବତାସ ରୂପରେ
ନିରବିଯାଇଛି ଛାତିତଳ କୋହ ଆଉ ମୋହ ।
ଟୋପାଏ ଲୁହର ଦେହେ ଲୋଟିଯାଏ
ପୋଷ ପୋଷ ସୁଖ ଆଉ ସ୍ନେହ ।।

ପାହି ଆସୁଥିବା ରାତି
କାନ୍ଦୁଛି ମଥା ପିଟି
ଖଣ୍ଡ ଖଣ୍ଡ ହୋଇ କଟା ହୋଇଥିବା
ସକାଳର ଚଟାଣ ଉପରେ ।
ଥାକ ଥାକ ମେଘ ଘୋଟି ଯାଇଅଛି
କୋଟି କୋଟି କଳ୍ପନାର କଳାପଟାପରେ ।।

ମୁଁ ଖୋଜୁଚି ମୋ ନିଜକୁ
ଛଳନାର ବାଷ୍ପରୁଦ୍ଧ ଦେହେ ।
ମୁଁ ବଞ୍ଚୁଛି ମୋ ଭିତରେ
ଡରି ଡରି ମରିଯିବା ଯାଏ ।। ❑❑

# ଦୃଶ୍ୟାନ୍ତର

(୧)

ଫଟା ମାଟି ଆଟିକା
ଭିତରେ ଜମିଥିବା ବର୍ଷାପାଣି
ଧୀରେ ଧୀରେ ଭସାଇ ନେଉଛି
ତା କଡ଼ ଉଚ୍ଛିଷ୍ଟ ଦେହରେ
ଲାଗିଥିବା ପିମ୍ପୁଡ଼ି ଧାରକୁ ।
　　ଗଞ୍ଜେଇ ଟାଣୁଥିବା
　　କାଳିଆ ଚିକିଟା ଲୋକଟା ମୁହଁରୁ
　　ବାହାରୁଥିବା ଚିଲମଧୂଆଁରେ
　　ଉଠିଯାଉଛି ବୁଲାକୁତୀଟିର
　　କାନ୍ଦଣା କାହିଁ କେତେ ଉପରକୁ ।

(୨)

ବର୍ଷାରାତି
ନିଶାଗର୍ଜୁଛି
ଜଳାକବାଟି ବାଟେ
ମିଞ୍ଜି ମିଞ୍ଜି ହୋଇ

ଜଳୁଥିବା ଡିବି ଆଲୁଅ
ଦୂରରୁ ଦିଶୁଚି
ଚିର୍‌ଗୁଣିର ଆଁ ଭଳି ।
ବିଲେଇ ଛୁଆଟି
ନାଳ ଛାଡ଼ିନି ଦିହରୁ
ରାସ୍ତା ମଝିରେ ରହି ରହି ଚାଲୁଛି
ଗାଡ଼ି ମଟରକୁ ଅଟକାଇ ଦେଉଛି
ବୁଲା କୁକୁର କେଇଟି
ଘେରି ଯାଇଛନ୍ତି ତାକୁ
ଓରଉଣ୍ଡି କାମୁଡ଼ିବେ ବୋଲି । ❑❑

# ଆଶ୍ରା

ମୋ ଆତୁରିଆ ମନର ଆଶଙ୍କା
ବିବସ୍ତ୍ର କରିଛି ମୋର ବିବେକକୁ
ସମୟକୁ ସମର୍ପି ଦେଇଛି
ସଞ୍ଚିତ ସାମର୍ଥ୍ୟ ଓ ଅନାୟାସରେ
ଆତଯାତ ମୋ ଘରିକଡ଼େ
ମୋତେ ବାହାବା କରୁଥିବା ପୃଥିବୀକୁ ।

ନଗ୍ନ ମାନସିକତାର ଭଗ୍ନ ହୃଦୟ
ଥରୁଚି ଗୋଟାପଣେ କିଛି
ଅଘଟଣର ଭିତ୍ତିଭୂମିକୁ ସ୍ୱପ୍ନ ଦେଖି,
ଅପହଞ୍ଚ ଈଶ୍ୱରଙ୍କ ଇଲାକା
ବାଂଧି ରଖିବାକୁ ବାଧ ହେଉଛି
ଦି'ହାତ ଟେକିଦେଇ ଆଶ୍ରା
ଖୋଜୁଥିବା ତାଂକର କିଛି ଅସହାୟ ସୃଷ୍ଟି ।

ଏତେ ସବୁ ଆୟୋଜନ
ହାତରେ ଖସି ପଡୁଥିବା ଟୋପାଏ ବାସ୍ନାଭଳି
ହେଇଟି ଆସୁଚି କହି

ଅନ୍ତର୍ଦ୍ଧାନ ହେଉଥିବା ପ୍ରତିଶ୍ରୁତି,
ପୁଣି ବେଳେବେଳେ
ଶୂନ୍ୟବାଣୀରୁ ଜନ୍ମ ନେଉଥିବା
କାଞ୍ଚନିକ ରାଜ୍ୟର ସମ୍ପତ୍ତି ।

ଅନ୍ତରଂଗ ମୃତ ଆବେଗଟିଏ
ମୋତେ ଭାବରେ ବାଂଧିଛି
ଝରା ବସଂତର ଅଙ୍କ ଅଙ୍କ ଦାଗ
ଝୁରା ଫୁଲ ହୋଇ ଗଳାରେ ଲମ୍ବିଛି । ❑❑

## ଝିଅ ରୂପା ପାଇଁ

ଆଖିର ଲୁହରେ
ଚହଲୁଚି ପିଲାଦିନ
ଚାପାଗଳାରେ ବାଷ୍ପରୁଦ୍ଧ
ତୋର ବାପା ଡାକ
ଚାରିକାନ୍ଥ ଭେଦି ଉଡ଼ିଯାଉଛି
କାନକୁ ଶୁଣାଯିବା ପର୍ଯ୍ୟନ୍ତ
କାହିଁ କେତେ ଦୂର।
ବାରିପାରୁଛି ଏବେ ବି ଏ ଆଖି
କାନ୍ଦ କାନ୍ଦ ଭାବ ତୋ ଅନୁପସ୍ଥିତିର ।।

ଘରେ ଏମିତି ଲାଗୁଛି
ନିର୍ଜ୍ଜନତାର ନିଷ୍ଠଳ ପାହାଚ
ଝୁରି ହେଉଛି ତୋ ପାଦର
ଚାପା ଗୁଞ୍ଜରଣ
ଶଢର ସାମୟିକ ଖେଳ
ଓଲଟିପଡ଼ି ଚାହୁଁଚି ଭିତରକୁ।
ତୋ ଆସିବା ବାଟ କ'ଣ
ଅଟକି ଯାଇଛି ଛାତିରେ
ଛାତିଏ କୋହ ଚାପି ଧରିବାକୁ ? ?

ଆଲୋକର ତୀର୍ଯ୍ୟକ ବତୀରେ
ଓହଳି ପଡ଼ିଛି ତୋ
ଆଖିର ଅପଲକ ଦୃଷ୍ଟି
ସଂପର୍କର ସୁନା ସେତୁବନ୍ଧ
ରୋମାଞ୍ଚ ସୃଷ୍ଟିକାରୀ ମୁହୂର୍ତ୍ତ-
ଗୁଡ଼ିକର ଗଦ୍ ଗଦ୍ ସ୍ୱଭାବ
ଭଲ ପାଇବାର ସାମିଆନା ତଳେ
ଭୁଲ୍ ବୁଝିବାର ଦୌରାତ୍ମ୍ୟ ତୋର
ଅହରହ ଅଝଟ ହେଉଛି ।
ଟିକିଏ ହସୁଛି ଯଦିବା କେତେବେଳେ
ଦଇବ ସହୁନି
କାନ୍ଦି କାନ୍ଦି କ୍ରମାଗତ ଲୋଟିଯାଉଅଛି ।।

ଦିନର ନିର୍ଲ୍ଲଜ ନିଦ
ଅଳସ ଆଖିକୁ ତୋର
ମନେ ପକାଉଛି, ଏକା ଏକା
ଭଲ ପାଇବାର ଅପହଞ୍ଚ
ମୁହୂର୍ତ୍ତ ଏବେ ବି ବଂଚିଛି
ସ୍ନେହର ସୌଦାଗର ଖୋଜୁଛି
ତୋତେ ବାରଂବାର କାଟିବାକୁ
ତୋ କପାଳରେ ସୁଖ ଭାଗ୍ୟରେଖା ।
ଅହ୍ୟସୁଲକ୍ଷଣୀ ମା' ମୋର
ଇଏ ମୋର ଶେଷ ଇଚ୍ଛା
ଇଏ ମୋ ପ୍ରତୀକ୍ଷା ।। ❑❑



କବି ସଂକ୍ଷେପରେ...

- ଡ. ଗୋବିନ୍ଦ ଚନ୍ଦ୍ର ଦାଶ,
  ପ୍ରାଧ୍ୟାପକ, ରସାୟନ ବିଜ୍ଞାନ ବିଭାଗ,
  ସାମନ୍ତ ଚନ୍ଦ୍ରଶେଖର ସ୍ୱୟଂଶାସିତ ମହାବିଦ୍ୟାଳୟ, ପୁରୀ।
- ରୁଚି ରଖନ୍ତି କବିତା, ପ୍ରବନ୍ଧ, ଗଳ୍ପ, ଶିଶୁଲେଖା ଇତ୍ୟାଦିରେ
  ଉତ୍ତର ସତୁରି ଦଶକରୁ।
- ପାଠ୍ୟପୁସ୍ତକ ଲେଖିବାରେ ବି ସମୟ କାଟନ୍ତି।
- ପ୍ରଥମ କବିତା ସଂକଳନ 'ସମୟର ସ୍ୱର' ପ୍ରକାଶ ପାଏ ୨୦୦୭ରେ।
- 'ଆହତ ଉପତ୍ୟକା' କବିଙ୍କର ଦ୍ୱିତୀୟ କବିତା ସଂକଳନ।



**Gyanajuga Publication**
**Bhubaneswar, Odisha**
Email : contact@gyanajuga.com,
website : wwwgyanajuga.com


ISBN 81-89726-97-3
9 788189 726973